# ଭକ୍ତ ଓ ଜଗନ୍ନାଥ

( ତୃତୀୟ ଖଣ୍ଡ )

ଶ୍ରୀ ବ୍ରଜକିଶୋର ସାହୁ



ଆର୍ଟ ଷ୍ଟୁଡେଣ୍ଟସ୍ ଷ୍ଟୋର

ପ୍ରକାଶକ :

ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୨

ପ୍ରଥମ ସଂସ୍କରଣ :
ଡିସେମ୍ବର, ୧୯୭୯

ମୁଦ୍ରାକର :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର
ପ୍ରସାଦ ପ୍ରେସ, କଟକ-୨

ମୂଲ୍ୟ :—ଟ ୬-୦୦

# Bhakta O Jagannath

**Part III**

**Sri Brajakishore Sahoo**

Publisher

**Sri Anant Misra**
Cuttack Students Store,
Cuttack-2

Printer :

Prasad Press, Cuttack-2
First Edition: December, 1979
Price Rs. 6-00

---

*[ Paper used for printing of this book was made available by Government of Orissa at concessional rate ]*

# ନିଜ କଥା

ବଡ଼ ଆନନ୍ଦର କଥା, "ଭକ୍ତ ଓ ଜଗନ୍ନାଥ" ପୁସ୍ତକର ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ପ୍ରକାଶିତ ହୋଇ ଉତ୍କଳୀୟ ଭାଇ ଭଉଣୀମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇପାରିଛି । ସେଥିପାଇଁ ମୁଁ ନିଜକୁ ଅତ୍ୟନ୍ତ ଗୌରବାନ୍ୱିତ ମନେକରୁଛି । ପ୍ରଥମ ଓ ଦ୍ୱିତୀୟ ଖଣ୍ଡର ପାଠକମାନେ ଏପରି ପୁସ୍ତକ ପ୍ରତି ଯେଉଁ ପ୍ରକାର ଆଗ୍ରହ ଦେଖାଇଛନ୍ତି, ବାସ୍ତବିକ ତାହା ଅଭିନନ୍ଦନୀୟ । ସେହି ଆଗ୍ରହରେ ଉତ୍ସାହିତ ହୋଇ ମୁଁ "ଭକ୍ତ ଓ ଜଗନ୍ନାଥର" ତୃତୀୟ ଖଣ୍ଡ ରଚନା କରିବାରେ ପ୍ରବୃତ୍ତ ହୋଇଥିଲି । ବଡ଼ ସୁଖର କଥା, ଆଜି ତାହା ସମ୍ପୂର୍ଣ୍ଣ ହୋଇ ପ୍ରକାଶିତ ହେବାକୁ ଯାଉଛି ।

ଜଗନ୍ନାଥଙ୍କ ବିଷୟରେ ଯେତେ ଲେଖିଲେ ମଧ ମନେହୁଏ, ଆହୁରି ଅନେକ କିଛି ବାକି ରହିଯାଉଛି । ଉପନିଷଦରେ ଯେଉଁ ବ୍ରହ୍ମଙ୍କର ସ୍ୱରୂପ ବର୍ଣ୍ଣନା କରାଯାଇଛି, ଠିକ୍ ଭାବରେ ଅନୁଧ୍ୟାନ କଲେ ଜଣାଯାଏ, ଜଗନ୍ନାଥ ହିଁ ସେହି ବ୍ରହ୍ମଙ୍କର ପ୍ରତୀକ । ସେଥିପାଇଁ ତାଙ୍କୁ "ଦାରୁବ୍ରହ୍ମ" ନାମରେ ଆଖ୍ୟାୟିତ କରାଯାଏ । ଉପନିଷଦର ବ୍ରହ୍ମଙ୍କ ପରି ନୀଳାଦ୍ରୀଶ୍ୱର ଦାରୁବ୍ରହ୍ମ ମଧ ଅନନ୍ତ, ଅପାର । ତଥାପି ଭକ୍ତର ମନୋବାଞ୍ଛା ପୂରଣ କରିବାପାଇଁ ଯୁଗେ ଯୁଗେ ସେ ଲୀଳାବିଗ୍ରହ ଧାରଣ କରିଥାନ୍ତି । ଭକ୍ତ ସମ୍ମୁଖରେ ସେ ଆବିର୍ଭୂତ ହୁଅନ୍ତି ମନମୋହନ ରୂପରେ । ଭକ୍ତର ଐକାନ୍ତିକ ଭକ୍ତିରେ ସନ୍ତୁଷ୍ଟ ହୋଇ ସେ ଅଗୋଚରରୁ ହୁଅନ୍ତି ଗୋଚର, ଅସୀମରୁ ହୁଅନ୍ତି ସସୀମ । ତାହା ହିଁ ଜଗନ୍ନାଥ ତଥା ଜଗନ୍ନାଥ ଧର୍ମର ବୈଶିଷ୍ଟ୍ୟ ।

ଏହି ତୃତୀୟ ଖଣ୍ଡରେ ଯେଉଁ ଭକ୍ତମାନଙ୍କର ଚରିତ ଆଲୋଚିତ ହୋଇଛି, ତାହା ଅନନ୍ତ ଜଗନ୍ନାଥ-ମହିମାର ଗୋଟିଏ

ଗୋଟିଏ ଅଂଶ ମାତ୍ର । ଏଥିରୁ ଅଧିକାଂଶ ବିଷୟ ଭକ୍ତକବି ରାମଦାସ ବିରଚିତ "ଦାର୍ଢ୍ୟତା ଭକ୍ତି ରସାମୃତ"ରୁ ଗୃହୀତ । ବାକି ବିଷୟଗୁଡ଼ିକ ଅନ୍ୟାନ୍ୟ ପୁସ୍ତକରୁ ସଂଗ୍ରହ କରାଯାଇଛି । ତଥାପି ଆହୁରି ଅନେକ ବିଷୟ ଏହି ପୁସ୍ତକରେ ସନ୍ନିବେଶିତ କରି ହେଲା ନାହିଁ । ଏପରିକି ଇଚ୍ଛା ଥିଲେ ମଧ୍ୟ ଯବନଭକ୍ତ ସାଲବେଗ, ଗୀତଗୋବିନ୍ଦକାର ଜୟଦେବ ଆଦି ଜଣାଶୁଣା ଭକ୍ତମାନଙ୍କର ଚରିତ ଏହି ପୁସ୍ତକରେ ପ୍ରକାଶିତ କରିପାରିଲି ନାହିଁ । ଜଗନ୍ନାଥଙ୍କର କରୁଣା ହେଲେ ନିକଟ ଭବିଷ୍ୟତରେ ତାହା ସବୁ ଚତୁର୍ଥ ଖଣ୍ଡରେ ପ୍ରକାଶ କରି ମୋର ଉତ୍କଳୀୟ ଭାଇ ଭଉଣୀମାନଙ୍କ ହସ୍ତରେ ଅର୍ପଣ କରିବି ।

ଯେଉଁମାନଙ୍କର ଅକୃତ୍ରିମ ସାହାଯ୍ୟ ସହାନୁଭୂତିରେ ଉତ୍ସାହିତ ହୋଇ ଏହି ପୁସ୍ତକଟି ଅତିଶୀଘ୍ର ପ୍ରକାଶ କରିବାକୁ ମୁଁ ସମର୍ଥ ହୋଇଛି, ସେମାନେ ହେଲେ, ମୋର ଗୁରୁପ୍ରତିମ ଶ୍ରୀ ହରିକୃଷ୍ଣ ପ୍ରଧାନ, ସାହିତ୍ୟାଗ୍ରୀ (?) ଶିକ୍ଷକ ଶ୍ରୀ ସର୍ବେଶ୍ୱର ମହାପାତ୍ର, ବନ୍ଧୁ ଶ୍ରୀ କିଶୋରଚନ୍ଦ୍ର ବରାଳ, ଗୁରୁ ଶ୍ରୀ ନଟବର ସାହୁ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋରର ପରିଚାଳକ ଶ୍ରୀ ନୃସିଂହପ୍ରସାଦ ମିଶ୍ର ଏବଂ ସର୍ବୋପରି ମୋର ସ୍ତ୍ରୀ ଶ୍ରୀମତୀ ମଞ୍ଜୁଳା ସାହୁ । ସେମାନଙ୍କୁ ମୁଁ ମୋର ଅନ୍ତରର ଗଭୀର କୃତଜ୍ଞତା ଜ୍ଞାପନ କରୁଛି । ଇତି ।

ଗୁରୁଜଙ୍ଗ (ଖୋର୍ଦ୍ଧା)
ତା ୨ । ୧୦ । ୧୯୭୯

**ବ୍ରଜକିଶୋର ସାହୁ**

# ସୂଚୀ





# ଜଗନ୍ନାଥ ଦାସ ଓ ଶ୍ରୀଜଗନ୍ନାଥ

ଯୋ ମାଂ ପଶ୍ୟତି ସର୍ବତ୍ର ସର୍ବଂ ଚ ମୟି ପଶ୍ୟତି
ତସ୍ୟାହଂ ନ ପ୍ରଣଶ୍ୟାମି ସ ଚ ମେ ନ ପ୍ରଣଶ୍ୟତି ।
(ଶ୍ରୀମଦ୍‌ଭଗବଦ୍ ଗୀତା, ୬।୩୦)

ଯେଉଁ ବ୍ୟକ୍ତି ମୋତେ ସର୍ବପ୍ରାଣୀ ମଧ୍ୟରେ ଏବଂ ସମସ୍ତ ପ୍ରାଣୀଙ୍କୁ ମୋ ମଧ୍ୟରେ ଦେଖନ୍ତି, ମୁଁ ସେହି ସର୍ବତ୍ର ବ୍ରହ୍ମଦର୍ଶୀ ଯୋଗୀଙ୍କୁ ଅଦୃଶ୍ୟ ହୁଏ ନାହିଁ, କି ସେ ମଧ୍ୟ ମୋର ଅଦୃଶ୍ୟ ହୁଅନ୍ତି ନାହିଁ ।

ମାନବ ଜୀବନର ପରମ ଉଦ୍ଦେଶ୍ୟ ବ୍ରହ୍ମସାକ୍ଷାତ୍‌କାର । ଏହି ବ୍ରହ୍ମସାକ୍ଷାତ୍‌କାର ଲାଭ ହେଲେ ମନୁଷ୍ୟର ଜ୍ଞାନଚକ୍ଷୁ ଉନ୍ମୁକ୍ତ ହୋଇଯାଏ; ସେ ସର୍ବତ୍ର ବ୍ରହ୍ମଦର୍ଶନ କରିବାକୁ ସମର୍ଥ ହୁଏ । ଏପରି ଅବସ୍ଥାରେ ସେହି ବ୍ରହ୍ମଦର୍ଶୀ ସାଧକର ସ୍ତ୍ରୀ-ପୁରୁଷ, ଜୀବ-ଜଡ଼ ସ୍ଥାବର-ଅସ୍ଥାବର, ଏପରି କୌଣସି ଭେଦଭାବ ରହେ ନାହିଁ । କାରଣ ସୃଷ୍ଟିର ପ୍ରତି ପଦାର୍ଥରେ ସେ କେବଳ ବ୍ରହ୍ମ ହିଁ ଦର୍ଶନ କରନ୍ତି । ବ୍ରହ୍ମଦର୍ଶନ କରୁ କରୁ ତାଙ୍କ ଚକ୍ଷୁ ଆଗରେ ବ୍ରହ୍ମଙ୍କର ବିଶ୍ୱରୂପ ପ୍ରତିଭାତ ହୋଇଉଠେ । ସେ ଦେଖନ୍ତି, ବ୍ରହ୍ମ ମଧ୍ୟରେ ସୃଷ୍ଟିର ସମସ୍ତ ପଦାର୍ଥ । ସୁର, ନର, ଗନ୍ଧର୍ବ, କିନ୍ନର

ବୃକ୍ଷ, ଲତା, ପାହାଡ଼, ପର୍ବତ, ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, ସୂର୍ଯ୍ୟ, ଚନ୍ଦ୍ର, ଅଗ୍ନି, ବରୁଣ, ବାୟୁ ଆଦି ସୃଷ୍ଟିର ଯାବତୀୟ ବସ୍ତୁ ବ୍ରହ୍ମ ମଧ୍ୟରେ ଉଦ୍‌ଭାସିତ ହୋଇ ଉଠନ୍ତି । ସେତେବେଳେ ସାଧକ ମଧ୍ୟ ନିଜ ମଧ୍ୟରେ ବ୍ରହ୍ମଙ୍କୁ ଓ ବ୍ରହ୍ମ ମଧ୍ୟରେ ନିଜକୁ ଦର୍ଶନ କରନ୍ତି । ଏହିପରି ଅବସ୍ଥାରେ ଉପନୀତ ହୋଇ ପାରିଲେ, ମନୁଷ୍ୟର ସମସ୍ତ ଭବବନ୍ଧନ ଛିନ୍ନ ହୋଇଯାଏ ଏବଂ ସେ ଜନ୍ମ-ମୃତ୍ୟୁର ଆବର୍ତ୍ତରୁ ମୁକ୍ତହୋଇ ପରମାନନ୍ଦ ଲାଭ କରେ ।

ଅତିବଡ଼ୀ ଜଗନ୍ନାଥ ଦାସ ଥିଲେ ଏହିପରି ଜଣେ ଅତି ଉନ୍ନତ ଧରଣର ସାଧକ । ସେ ସ୍ୱୀୟ ସାଧନା ବଳରେ କେବଳ ଯେ ବ୍ରହ୍ମସାକ୍ଷାତ୍‌କାର ଲାଭ କରିଥିଲେ ତାହା ନୁହେଁ, ମହର୍ଷି ବ୍ୟାସକୃତ ଶ୍ରୀମଦ୍‌ଭାଗବତ ମହାପୁରାଣକୁ ଓଡ଼ିଆ ଭାଷାରେ ରଚନାକରି ହଜାର ହଜାର ନିଷ୍ପେଷିତ, ଅବହେଳିତ ଓ ପଥହରା ଓଡ଼ିଆମାନଙ୍କୁ ମୁକ୍ତିପଥର ସନ୍ଧାନ ଦେଇଥିଲେ । ସେଥିପାଇଁ ସେ ଓଡ଼ିଆମାନଙ୍କର କେବଳ ନମସ୍ୟ ନୁହନ୍ତି, ସେ ଓଡ଼ିଆ ଜାତିର କର୍ଣ୍ଣଧାର, ଉପଦେଷ୍ଟା ଓ ପଥ ନିର୍ଦ୍ଦେଶକ । ଏପରି କୌଣସି ଓଡ଼ିଆ ନାହାନ୍ତି, ଯିଏ କି ଜଗନ୍ନାଥ ଦାସଙ୍କର ମହିମା ବିଷୟରେ ଜାଣନ୍ତି ନାହିଁ; ଏପରି କୌଣସି ଗ୍ରାମ ନାହିଁ, ଯେଉଁଠାରେ କି ଭାଗବତ ଘର ନାହିଁ; ଏପରି କୌଣସି ଘର ନାହିଁ, ଯେଉଁଠାରେ କି ଭାଗବତ ଗାଦି ପୂଜା ହୁଏ ନାହିଁ । ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ଜାତି ବଞ୍ଚି ରହିଥିବ, ସେତେଦିନ ପର୍ଯ୍ୟନ୍ତ ଜଗନ୍ନାଥ ଦାସଙ୍କର କୀର୍ତ୍ତି ଓ ତାଙ୍କ ଲିଖିତ ଶ୍ରୀମଦ୍ଭାଗବତର ମହନୀୟତା ଅକ୍ଷୁଣ୍ଣ ରହିଥିବ ।

ଜଗନ୍ନାଥ ଦାସ ଯେ କେବଳ ଜଣେ ଉଚ୍ଚ ଧରଣର ସାଧକ ଥିଲେ ତାହା ନୁହେଁ, ସେ ଥିଲେ ଜଗନ୍ନାଥ ମହାପ୍ରଭୁଙ୍କର ଜଣେ

ଉନ୍ନତ ଧରଣର ଭକ୍ତ । ଶ୍ରୀକ୍ଷେତ୍ରର ପବିତ୍ର ଭୂମିରେ ବାସକରି ସେ ପ୍ରତ୍ୟହ ଜଗନ୍ନାଥ ଦର୍ଶନ କରୁଥିଲେ । ଜଗନ୍ନାଥଙ୍କର ଦର୍ଶନ ମାତ୍ରେ ତାଙ୍କର ହୃଦୟ ଭକ୍ତିରେ ଆପ୍ଲୁତ ହୋଇ ଉଠୁଥିଲା ଏବଂ ସେ ତନ୍ମୟ ହୋଇ ପୁଲକିତ କଣ୍ଠରେ ଜଣାଣ ଗାନ କରୁଥିଲେ । ଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ତାଙ୍କର କିପରି ଐକାନ୍ତିକ ଭକ୍ତି ଥିଲା, ତାହା ଭକ୍ତକବି ଦିବାକର ଦାସ ନିମ୍ନୋକ୍ତ ବାକ୍ୟରେ ବର୍ଣ୍ଣନା କରିଛନ୍ତି—

"ସନ୍ଧି ଯୁବତୀ ପରି ହେଲେ । ତୀର୍ଥ କ୍ଷେତ୍ର ସେ ନ ବାଞ୍ଛିଲେ ।
ଦେବ, ତୀର୍ଥ, କ୍ଷେତ୍ର ଏ ବ୍ରତ । ଏ ବାଞ୍ଛା ନ କରନ୍ତି ଚିତ୍ତ ।
ରାତ୍ର ଦିବସ ନିରନ୍ତର । ଶ୍ରୀଜଗନ୍ନାଥଙ୍କ ପସ୍ଥର ।
ଯେମନ୍ତେ ଜନକ ଦୁଲଣୀ । ରାମହୁଁ ଅନ୍ୟକୁ ନ ମାନି ।
ଯେମନ୍ତେ ପର୍ବତ ଦୁହିତା । ନିତ୍ୟ ଭଜନ୍ତି ପଞ୍ଚମଥା ।
ଯେମନ୍ତେ ରାଧା-ବୃନ୍ଦାବନ । ହୃଦେ ଭାବି ନନ୍ଦନନ୍ଦନ ।
ଯେମନ୍ତେ ଭୀଷ୍ମକ ନନ୍ଦିନୀ । କୃଷ୍ଣହୁଁ ଆନକୁ ନ ମାନି ।
ତେମନ୍ତେ ଦାସ ଜଗନ୍ନାଥ । ହୃଦେ ଭାବନ୍ତି ଜଗନ୍ନାଥ ।
(ଶ୍ରୀଜଗନ୍ନାଥ ଚରିତାମୃତ)

ଦିନକର କଥା । ସେତେବେଳକୁ ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରି ନ ଥିଲେ । ସେଦିନ ପ୍ରଭାତରୁ ଜଗନ୍ନାଥ ଦାସଙ୍କର ମାତା ପଦ୍ମାବତୀ ପୁରାଣ ଶୁଣିବା ପାଇଁ ଶ୍ରୀମନ୍ଦିରକୁ ଯାଇଥିଲେ । ସେ କାଳରେ ତାହା ହିଁ ପ୍ରଚଳିତ ବିଧି ଥିଲା । ପୁରୀର ଗଜପତି ମହାରାଜା ଶ୍ରୀମନ୍ଦିରରେ ପୁରାଣ ପଣ୍ଡା ନିଯୁକ୍ତ କରୁଥିଲେ । ପୁରାଣ ପଣ୍ଡା ସଂସ୍କୃତ ଭାଷାରେ ଲିଖିତ ପୁରାଣ ସବୁ ସରଳ ଓଡ଼ିଆ ଭାଷାରେ ଅନୁବାଦ କରି ଧର୍ମପ୍ରାଣ ଓଡ଼ିଆମାନଙ୍କୁ ବୁଝାଉଥିଲେ ।

ଓଡ଼ିଆ ଭାଷାରେ କୌଣସି ପୁରାଣ ଲିଖିତ ହୋଇ ନ ଥିବାରୁ ଧର୍ମପ୍ରାଣ ଓଡ଼ିଆମାନେ ପୁରାଣ ପଣ୍ଡାଙ୍କ ନିକଟକୁ ଯାଇ ପୁରାଣ ଶୁଣୁଥିଲେ ଏବଂ ପୁରାଣପଣ୍ଡାଙ୍କୁ ଉପଯୁକ୍ତ ଦକ୍ଷିଣା ପ୍ରଦାନ କରି ସନ୍ତୁଷ୍ଟ କରୁଥିଲେ । ସେଦିନ ପଦ୍ମାବତୀ କିଛି ଦକ୍ଷିଣା ଦେଇ ନ ପାରିବାରୁ ପୁରାଣପଣ୍ଡା କ୍ରୁଦ୍ଧହୋଇ ତାଙ୍କୁ ଫେରାଇ ଦେଇଥିଲେ ।

ପୁରାଣପଣ୍ଡାଙ୍କ ନିକଟରୁ ଅପମାନ ପାଇ ଏବଂ ପୁରାଣ ଶୁଣିବାରୁ ବଞ୍ଚିତା ହୋଇ ପଦ୍ମାବତୀ ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ସେତେବେଳକୁ ଦୁଃଖ ଏବଂ କ୍ଷୋଭରେ ତାଙ୍କର ହୃଦୟ ଭାଙ୍ଗି ପଡ଼ିଥିଲା ।

ଜଗନ୍ନାଥ ଦାସ ମାତାଙ୍କର ଏତାଦୃଶ ଅବସ୍ଥା ନିରୀକ୍ଷଣ କରି ବିଚଳିତ ହୋଇ ପଡ଼ିଲେ ଏବଂ ହଜାର ହଜାର ଦରିଦ୍ର ଓ ନିଷ୍ପେଷିତ ଧର୍ମପ୍ରାଣ ଓଡ଼ିଆମାନଙ୍କର ଆଶା ପୂରଣ କରିବା ପାଇଁ ଶ୍ରେଷ୍ଠ ଭକ୍ତିଗ୍ରନ୍ଥ ଶ୍ରୀମଦ୍ଭାଗବତ ମହାପୁରାଣ ଓଡ଼ିଆରେ ରଚନା କରିବା-ପାଇଁ ସଂକଳ୍ପବଦ୍ଧ ହେଲେ । ତାଙ୍କର ସେହି ଦୃଢ଼ ସଙ୍କଳ୍ପ ଓ ଅଧ୍ୟବସାୟ ବଳରେ ଯେଉଁ ଭାଗବତ ମହାପୁରାଣ ଓଡ଼ିଆ ଭାଷାରେ ରଚିତ ହେଲା, ତାହା ଆଜି ହଜାର ହଜାର ଓଡ଼ିଆମାନଙ୍କର ଧର୍ମପଥର ଏକମାତ୍ର ପାଥେୟ ।

ଜଗନ୍ନାଥ ଦାସ ଓଡ଼ିଆରେ ଭାଗବତ ରଚନା କରି ନିଜ ମାତା ପଦ୍ମାବତୀଙ୍କର ହୃଦୟରେ ଯେପରି ଆନନ୍ଦର ଢେଉ ଖେଳାଇ ଦେଇଥିଲେ, ସେହିପରି ସଂସ୍କୃତ ଅନଭିଜ୍ଞ ହଜାର ହଜାର ଓଡ଼ିଆ ମାନଙ୍କର ପଥପ୍ରଦର୍ଶକ ଭାବରେ ସେମାନଙ୍କୁ ମୁକ୍ତି ପଥରେ ପରିଚାଳିତ କରିଥିଲେ । ନିଜ ପିତାଙ୍କ ସ୍ୱର୍ଗବାସ ପରେ ସେ ଶ୍ରୀମନ୍ଦିରର ପୁରାଣ

ଯଣ୍ତା ଭାବରେ ନିଯୁକ୍ତି ପାଇଥିଲେ । ଶ୍ରୀମନ୍ଦିରର ବଟ ଗଣେଶଙ୍କ ନିକଟରେ ସେ ପୁରାଣପାଠ କରି ଧର୍ମପ୍ରାଣ ଓଡ଼ିଆମାନଙ୍କୁ ଭକ୍ତି ଭାବରେ ତନ୍ମୟ କରି ଦେଉଥିଲେ । ଥରେ ଶ୍ରୀଶ୍ରୀ ଚୈତନ୍ୟଦେବ ଜଗନ୍ନାଥଦାସଙ୍କର ଭାଗବତ ପାଠ ଶୁଣି ଏପରି ଭାବ-ବିଭୋର ହୋଇଗଲେ ଯେ ସେ ଆନନ୍ଦରେ ଜଗନ୍ନାଥଦାସଙ୍କୁ ଆଲିଙ୍ଗନ କରିବା ମାତ୍ରେ ତାଙ୍କର ମନ ବାହ୍ୟଦଶାରୁ ମୁକ୍ତ ହୋଇ ଭାବ-ସମାଧିରେ ବୁଡ଼ିବାକୁ ଲାଗିଲା । ଜଗନ୍ନାଥ ଦାସ ମଧ୍ୟ ଅନୁରୂପ ଅବସ୍ଥା ପ୍ରାପ୍ତ ହୋଇ ଅନ୍ତଃରାଜ୍ୟରେ ଘୂରିବାକୁ ଲାଗିଲେ । କଥିତ ଅଛି, ଏହିପରି ପରସ୍ପର ଆଲିଙ୍ଗନ ଅବସ୍ଥାରେ ସେମାନେ ଅଢ଼ାଇ ଦିନ କଟାଇ ଥିଲେ—

"ଏହି ସମୟେ ଶ୍ରୀ ଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ।
ବଟ ଗଣେଶ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ।
ପ୍ରେମ ଭରେଣ ଶ୍ରୀ ଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ।
ଅଢ଼ାଇ ଦିବସ ପର୍ଯ୍ୟନ୍ତେ । ଦୁହେଁ ରହିଲେ ପ୍ରେମ ଚିତ୍ତେ ।"

(ଶ୍ରୀଜଗନ୍ନାଥ ଚରିତାମୃତ)

ଦୁଇ ସାଧକ ବାହ୍ୟ ଦଶାକୁ ଫେରି ଆସିବା ପରେ ଶ୍ରୀ ଚୈତନ୍ୟ ଦେବ ଜଗନ୍ନାଥଦାସଙ୍କୁ 'ଅତିବଡ଼' ବୋଲି ସମ୍ବୋଧନ କରିଥିଲେ । ସେହିଦିନଠାରୁ ସେ 'ଅତିବଡ଼ୀ ଜଗନ୍ନାଥ ଦାସ' ନାମରେ ପରିଚିତ ହେଲେ ।

ଦିନକୁ ଦିନ ଜଗନ୍ନାଥ ଦାସଙ୍କର କୀର୍ତ୍ତି ବଢ଼ିବାକୁ ଲାଗିଲା । ଶ୍ରୀକ୍ଷେତ୍ରର ଆବାଳ-ବୃଦ୍ଧ-ବନିତା ତାଙ୍କ ମୁଖରୁ ସୁଲଳିତ ଭାଗବତ ପାଠ ଶୁଣି ପରମ ଆନନ୍ଦ ଅନୁଭବ କଲେ । ବଟ ଗଣେଶଙ୍କ ନିକଟରେ ସେ ଯେତେବେଳେ ଭାଗବତ ଶୁଣାଉଥିଲେ, ସେତେ-

ଯେପରି ସେଠାରେ ଜନ-ସମୁଦ୍ରର ଢେଉ ଉଚ୍ଛୁଳି ପଡ଼ୁଥିଲା ।
ଏଣେ ଲକ୍ଷ୍ମୀ-ମନ୍ଦିରରେ ଯେଉଁ ପୁରାଣପଣ୍ଡାମାନେ ସଂସ୍କୃତ ପୁରାଣ
ପାଠ କରୁଥିଲେ, ସେମାନଙ୍କଠାରୁ ପୁରାଣ ଶୁଣିବାକୁ ଆଉ କେହି
ଆସିଲେ ନାହିଁ । ଫଳରେ ସେମାନଙ୍କର ଆୟର ପରିମାଣ କମିବାକୁ
ଲାଗିଲା । ସେମାନେ ଜଗନ୍ନାଥ ଦାସଙ୍କ ପ୍ରତି ଈର୍ଷାପରାୟଣ
ହୋଇ ଉତ୍କ୍ଷିପ୍ତ ହେବାକୁ ଲାଗିଲେ । ଚୈତନ୍ୟ ମହାପ୍ରଭୁ ଜଗନ୍ନାଥ
ଦାସଙ୍କୁ 'ଅତିବଡ଼ୀ' ଉପାଧିରେ ଭୂଷିତ କରିଥିବାରୁ ସେମାନେ
ପୂର୍ବରୁ ଅସନ୍ତୁଷ୍ଟ ହୋଇଥିଲେ । ଏବେ ସେମାନଙ୍କର ଆୟର ପନ୍ଥା
ବନ୍ଦ ହୋଇଯିବାରୁ ସେମାନେ ଜଗନ୍ନାଥ ଦାସଙ୍କର କପରି ଅନିଷ୍ଟ-
ସାଧନ କରିବେ, ତାହା ଚିନ୍ତା କରିବାକୁ ଲାଗିଲେ ।

ଜଗନ୍ନାଥ ଦାସ ଥିଲେ ସମଦୃଷ୍ଟି-ସମ୍ପନ୍ନ । ସେ ପୁରୁଷମାନଙ୍କ
ସଙ୍ଗେ ଯେପରି ମିଶୁଥିଲେ, ସ୍ତ୍ରୀ ମାନଙ୍କ ସଙ୍ଗେ ମଧ୍ୟ ସେହିପରି ମିଶି
ପାରୁଥିଲେ । ଭାଗବତ ଶୁଣାଇବା ସମୟରେ ସେ ସ୍ତ୍ରୀ-ପୁରୁଷର
ଭେଦଭାବ ଜାଣିପାରୁ ନ ଥିଲେ; କାରଣ ସେ ସମୟରେ ସେ ଏକ
ଉଚ୍ଚତର ଅବସ୍ଥାରେ ଅବସ୍ଥାନ କରି ଭଗବତ୍ ପ୍ରେମରେ ବିଭୋର
ହୋଇ ଯାଉଥିଲେ । ବିଶେଷତଃ ଶ୍ରୀକ୍ଷେତ୍ରର ସ୍ତ୍ରୀମାନେ ଜଗନ୍ନାଥ
ଦାସଙ୍କୁ ଅତ୍ୟନ୍ତ ଆଦର କରୁଥିଲେ । ସେମାନେ ଜଗନ୍ନାଥ
ଦାସଙ୍କର ସୁଲଳିତ କଣ୍ଠରୁ ଭାଗବତ ଶୁଣିବା ପାଇଁ ସତେ ଯେପରି
ଭୋକ ଶୋଷ ଭୁଲି ଯାଉଥିଲେ । ଜଗନ୍ନାଥ ଦାସ ଥିଲେ ଅଜନ୍ମ
ବ୍ରହ୍ମଚାରୀ, ତେଣୁ ସ୍ତ୍ରୀମାନଙ୍କ ସଙ୍ଗେ ମିଶିବା ସମୟରେ ସେ ନିଜକୁ
ସ୍ତ୍ରୀ ବୋଲି ମନେ କରୁଥିଲେ ।

କିନ୍ତୁ ଜଗନ୍ନାଥ ଦାସଙ୍କର ଏହି ଆଚରଣ ପୂର୍ବୋକ୍ତ ପୁରାଣ
ପଣ୍ଡାମାନଙ୍କର ଚକ୍ଷୁଶୂଳ ହେଲେ । ସେମାନେ ତ ଆଗରୁ ଜଗନ୍ନାଥ

ଦାସଙ୍କର ଅନିଷ୍ଟ କରିବା ପାଇଁ ସୁଯୋଗ ଖୋଜୁଥିଲେ । ତେଣୁ ଏହି ସୁଯୋଗରେ ଆନନ୍ଦିତ ହୋଇ ସେମାନେ ତତ୍‌କାଳୀନ ଗଜପତି ମହାରାଜା ପ୍ରତାପରୁଦ୍ରଦେବଙ୍କ ନିକଟରେ ଗୁହାରି କଲେ—

"× × ଶୁଣ ନୃପବର | ତୋ ପୁଣ୍ୟ କ୍ଷେତ୍ରର ବିଧାନ ।
ବ୍ରାହ୍ମଣ ଜଗନ୍ନାଥ ଦାସ | ଅନେକ ସ୍ତ୍ରିରି କଲା ନାଶ ।
ଛୁପା ତିଳକ ମାଳା ଭରି | କପଟେ ହୋଇ ବ୍ରହ୍ମଚାରୀ ।
କାଖରେ ପୁସ୍ତକ ଗୋଟିଏ | ଧରି ବୁଲଇ ସର୍ବଦାଏ ।
ଯେଣେ ଦେଖଇ ନାରୀବୃନ୍ଦ | କେ କହୁ ତାହାର ଆନନ୍ଦ ।
ତହିଁ ବସିଣ କରେ ଗୀତ | ହଲାଇ ମୁଣ୍ଡ ତାର ହସ୍ତ ।
ଅର୍ଥ କହଇ ନାନା ମତେ | ସ୍ତିରିଙ୍କି ମୋହିବା ନିମନ୍ତେ ।
ତାହା ଶୁଣନ୍ତି ଯେତେ ନାରୀ | କେହି ପାରୁ ତାଠାରେ ଉବୁରି ।
ତାକୁ କରନ୍ତି ଯେତେ ସେବା | ପତିଙ୍କି ନ କରିବେ ଅବା ।
ଏ କଥା ବୁଝ ନୃପ ଶଶୀ | ସତ କି ମିଛ ଦୂତ ପେଷି ।"

(ଦାର୍ଢ୍ୟତାଭକ୍ତି ରସାମୃତ)

ପୁରାଣ ପଣ୍ଡାଙ୍କର ଏହି ଅଭିଯୋଗକୁ ମହାରାଜା ପ୍ରତାପରୁଦ୍ର-ଦେବ ମିଥ୍ୟା ବୋଲି ଉଡ଼ାଇ ଦେଇ ପାରିଲେ ନାହିଁ । ସେ ଏହାର ସତ୍ୟତା ପରୀକ୍ଷା କରିବା ପାଇଁ ତଙ୍ଗେ ସଙ୍ଗେ ଜଗନ୍ନାଥ ଦାସଙ୍କୁ ଡକାଇ ପଠାଇଲେ । ଜଗନ୍ନାଥ ଦାସ ରାଜସଭାରେ ଉପସ୍ଥିତ ହେବାମାତ୍ରେ ପ୍ରତାପରୁଦ୍ରଦେବ କହିଲେ—'ହେ ଜଗନ୍ନାଥ ! ତୁମ ନାମରେ ଅଭିଯୋଗ ହେଉଛି ଯେ ତୁମେ ସ୍ତ୍ରୀମାନଙ୍କ ସଙ୍ଗେ ଅବାଧ ମିଳାମିଶା କରୁଛ ଏବଂ ସେମାନଙ୍କୁ କଳୁଷିତ କରୁଛ । ବ୍ରହ୍ମଚାରୀ ହୋଇ ଏପରି ହୀନକର୍ମରେ ଜଡ଼ିତ ରହିବା ଘୋର

ପାପ ମଧ୍ୟରେ ପରିଗଣିତ । ତେଣୁ ତୁମେ ଆଇନ ଆଗରେ ଅପରାଧୀ ।’

ଏହା ଶୁଣି ଜଗନ୍ନାଥ ଦାସ କହିଲେ—“ହେ ମହାରାଜ ! ଅଭିଯୋଗକାରୀଙ୍କର ଏହି ଅଭିଯୋଗକୁ ମାନି ନେବାକୁ ମୁଁ ପ୍ରସ୍ତୁତ ନୁହେଁ । ଅବଶ୍ୟ ମୁଁ ସ୍ତ୍ରୀମାନଙ୍କ ସଙ୍ଗେ ମିଳାମିଶା କରେ; କିନ୍ତୁ ସେମାନଙ୍କୁ ମୁଁ ମାତୃତୁଲ୍ୟ ମନେ କରିଥାଏ; କାରଣ ମୁଁ ଆଜନ୍ମ ବ୍ରହ୍ମଚାରୀ । ଯେତେବେଳେ ମୁଁ ସ୍ତ୍ରୀମାନଙ୍କ ଗହଣରେ ଥାଏ, ସେତେ-ବେଳେ ମୋ ମଧ୍ୟରେ ସ୍ତ୍ରୀ-ଭାବ ପ୍ରକାଶିତ ହୁଏ । ଯେତେବେଳେ ପୁରୁଷମାନଙ୍କ ଗହଣକୁ ଚାଲିଆସେ, ସେତେବେଳେ ପୁଣି ମୁଁ ପୁରୁଷ-ଭାବ ଫେରିପାଏ ।’

ମହାରାଜା ପ୍ରତାପରୁଦ୍ରଦେବ ଜଗନ୍ନାଥ ଦାସଙ୍କର ଏହି କଥାକୁ ବିଶ୍ବାସ କରିପାରିଲେ ନାହିଁ । ତେଣୁ ସେ ପଚାରିଲେ—“ହେ ଜଗନ୍ନାଥ ! ତୁମେ ଯାହା କହିଲ ତାହା କ’ଣ ସତ୍ୟ ? ତାହା ଯଦି ସତ୍ୟ, ତେବେ ତୁମେ ସମସ୍ତଙ୍କ ଆଗରେ ନିଜର ସ୍ତ୍ରୀ-ଭାବ ପ୍ରକାଶ କର ।”

ଜଗନ୍ନାଥ ଦାସ ବିନୀତ ଭାବରେ ପ୍ରତ୍ୟୁତ୍ତର ଦେଲେ—‘ମହାରାଜ ! ହୃଦୟର ଭାବକୁ କ’ଣ ଚକ୍ଷୁ ଆଗରେ ଦେଖାଇ ହୁଏ ?

ପ୍ରତାପରୁଦ୍ରଦେବ ଏହି ଉତ୍ତର ଶୁଣି କ୍ରୋଧାନ୍ବିତ ହୋଇ କହିଲେ—“ତା’ହେଲେ ତୁମେ ଯାହା ସବୁ କହୁଛ, ତାହା ସମ୍ପୂର୍ଣ୍ଣ ମିଥ୍ୟା । ତେଣୁ ଯେ ପର୍ଯ୍ୟନ୍ତ ତୁମେ ନିଜର ସ୍ତ୍ରୀ-ଭାବ ପ୍ରକାଶ ନ କରିଛ, ସେ ପର୍ଯ୍ୟନ୍ତ ତୁମକୁ କାରାରୁଦ୍ଧ ହେବାକୁ ପଡ଼ିବ ।”

ଜଗନ୍ନାଥ ଦାସଙ୍କର ଆଉ କିଛି କହିବାର ନ ଥିଲା । ରାଜାଙ୍କ ନିର୍ଦ୍ଦେଶ କ୍ରମେ ସେ କାରାରୁଦ୍ଧ ହେଲେ ।

ଧୀରେ ଧୀରେ କର୍ମମୁଖର ଦିନକୁ ନିସ୍ତେଜ କରି ସୂର୍ଯ୍ୟଦେବ ପୃଥିବୀବକ୍ଷରୁ ବିଦାୟ ନେଲେ । ଲୋକମାନେ ମଧ୍ୟ ନିଜ ନିଜର ଦୈନିକ କର୍ମ ଧନ୍ଦାରୁ ଅବ୍ୟାହତି ପାଇ ସାନ୍ଧ୍ୟକର୍ମ ସମାପନାନ୍ତେ ଭୋଜନ ଗ୍ରହଣକରି ନିଦ୍ରାଦେବୀଙ୍କ ଶାନ୍ତିମୟ କୋଳରେ ଆଶ୍ରୟ ଗ୍ରହଣ କଲେ । ଯେତେବେଳେ ଶ୍ରୀକ୍ଷେତ୍ରର ଆବାଳ-ବୃଦ୍ଧ-ବନିତା ସମସ୍ତେ ନିଦ୍ରାରେ ଅଭିଭୂତ, ସେତେବେଳେ ଘନାନ୍ଧକାର କାରା-କକ୍ଷ ମଧ୍ୟରେ ଭକ୍ତ ଶିରୋମଣି ଜଗନ୍ନାଥ ଦାସ ଜାଗ୍ରତ ଥିଲେ । ତାଙ୍କ ନେତ୍ରଦ୍ୱୟରୁ ଧାର ଧାର ହୋଇ ଲୋତକର ସ୍ରୋତ ବହି ଚାଲିଥିଲା । ସେ ଦୁଃଖାତୁର ହୋଇ ଆକୁଳ ସ୍ୱରରେ ଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରାର୍ଥନା କରି କହିଲେ—

"ରଖହେ ଆରତ ଭଞ୍ଜନ । କଷ୍ଟ ପାବକ ପ୍ରଭଞ୍ଜନ ।
ଦ୍ରୌପଦୀ ଲଜ୍ଜା ନିବାରଣ । ବାରଣ ଆରତ ତାରଣ ।
କୃପା ସମୁଦ୍ର ଚକ୍ରପାଣି । ଶରଣ ଜନ ଚିନ୍ତାମଣି ।
ପ୍ରତାପରୁଦ୍ରର ଦଣ୍ଡରୁ । ଉଦ୍ଧର ଧରି ମହାମେରୁ ।
ଲଜ୍ଜା ସମୁଦ୍ର ପାରିକର । ମୁଁ ଯେବେ ଶରଣ ତୁମ୍ଭର ।
କରୁଣା କର ପ୍ରଭୁ ମୋତେ । କୀରତି ରହୁ ଏ ଜଗତେ ।
ଏ ଯେ ପୁରୁଷ ରୂପ ଯାଉ । ସ୍ତ୍ରୀରୀ ସ୍ୱରୂପ ମୋର ହେଉ ।
ଦେଖି ନୃପତି ମରୁ ଲାଜ । ଖଳଙ୍କ ମୁଖେ ଲାଗୁ କାଳ ।
କପଟୀ ଜନ ଛନ୍ତି ଯେତେ । ଚିନ୍ତାରେ ମରନ୍ତୁ ସମସ୍ତେ ।
ମୂର୍ଖ ଜନଙ୍କ ଗର୍ବନାଶୁ । ସାଧୁଙ୍କ ମହିମା ପ୍ରକାଶୁ ।
ଏମନ୍ତ ଆଜ୍ଞା ହେଉ ମୋତେ । ନୋହିଲେ ହତ୍ୟା ହେବ ତୋତେ
ତୋ ପରି ପ୍ରଭୁ ଥାଉଁ ଥାଉଁ । ଏ ବଜ୍ରଦଣ୍ଡ କେବା ସହୁ ।
ତୁ ଯେ ମୋହର ପ୍ରାଣନାଥ । ଏଠାରେ ନ ସରୁ ମହତ ।"

(ଦାର୍ଢ୍ୟତା ଭକ୍ତି)

ଆଖିରୁ ଲୁହ ଝରାଇ ଜଗନ୍ନାଥ ଦାସ ଏହିପରି ଅନେକ ଗୁହାରି କରିବାକୁ ଲାଗିଲେ । ଭକ୍ତର ଗୁହାରି ଶୁଣି ଭକ୍ତପ୍ରିୟ ଜଗନ୍ନାଥ ଆଉ ତାଙ୍କର ରତ୍ନସିଂହାସନ ଉପରେ ସ୍ଥିର ହୋଇ ରହିପାରିଲେ ନାହିଁ । ସଙ୍ଗେ ସଙ୍ଗେ ସେ ଭକ୍ତ ସମ୍ମୁଖରେ ଆସି ଉପସ୍ଥିତ ହେଲେ ।

ଅନ୍ଧକାରମୟ କାରାକକ୍ଷ ହଠାତ୍ ଦିବ୍ୟ-ଆଲୋକପୁଞ୍ଜରେ ଉଦ୍ଭାସିତ ହୋଇଉଠିଲା । ସେହି ଆଲୋକପୁଞ୍ଜ ମଧ୍ୟରେ ଭକ୍ତ-ପ୍ରିୟ ଜଗନ୍ନାଥ ଜଗନ୍ନାଥ ଦାସଙ୍କୁ ସହାସ୍ୟ ବଦନରେ ଦର୍ଶନ ଦେଲେ । ଭଗବାନଙ୍କର ଦର୍ଶନ ପାଇ ଜଗନ୍ନାଥ ଦାସ ନିଜକୁ କୃତ-କୃତ୍ୟ ମନେକଲେ ଏବଂ ଭଗବାନଙ୍କର ପାଦପଦ୍ମରେ ପ୍ରଣାମ କରି କହିଲେ—'ପ୍ରଭୁ ! ଏ ନିର୍ଜ୍ଜନ ଘନଅନ୍ଧକାର କାରାକକ୍ଷ ମଧ୍ୟରେ ତୁମେ ମୋତେ ଦର୍ଶନ ଦେଇ ମୋର ଜୀବନକୁ ସାର୍ଥକ କରିଛ । ମୋର ଆଜି କି ଭାଗ୍ୟ ! ମୋର ଆଜି କେତେ ଆନନ୍ଦ !! କିନ୍ତୁ ଏ ରୁଦ୍ଧ କାରାକକ୍ଷ ମଧ୍ୟରେ ତୁମର ପୂଜା କରିବା ପାଇଁ ମୋର କିଛି ନାହିଁ ପ୍ରଭୁ ! ମୋର ପ୍ରଣାମ ଗ୍ରହଣ କର; ମୋର ଏହି ସାମାନ୍ୟ ଭକ୍ତିରେ ସନ୍ତୁଷ୍ଟ ହୁଅ ।'

ପ୍ରଭୁ ଜଗନ୍ନାଥ କହିଲେ—"ମୋ ପାଇଁ ସେତିକି ଯଥେଷ୍ଟ ଜଗନ୍ନାଥ ! ଭଗବାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭକ୍ତିଛଡ଼ା ଆଉ କ'ଣ ଅଛି ? ତୁମର ଭକ୍ତି ମୋତେ ପରମ ଆନନ୍ଦ ଦେଇଛି । ତୁମର ନିଷ୍ଠାପୂତ ପ୍ରେମ ମୋ ହୃଦୟକୁ ଦ୍ରବୀଭୂତ କରିଛି, ସ୍ୱାର୍ଥପର ମନୁଷ୍ୟର ସମାଲୋଚନାରେ ଦୁଃଖ କରନି ଜଗନ୍ନାଥ ! ନିଜର ଭକ୍ତି ଏବଂ ନିଷ୍ଠାରେ ଅବିଚଳିତ ରହ । ତୁମେ ମୋର ପରମ ଭକ୍ତ । ରାଜ-ଅପମାନରୁ ରକ୍ଷା ପାଇବାପାଇଁ ମୁଁ ତୁମକୁ ନାରୀରୂପ ପ୍ରଦାନ

କରୁଛି । ତୁମର ନାରୀରୂପ ଦେଖି ରାଜାସମେତ ସମସ୍ତ ଜନତା ତୁମର ମହତ୍ତ୍ୱ ଉପଲବ୍ଧି କରିବେ । ତୁମେ ଯେତେବେଳେ ଚାହିଁବ, ସେତେବେଳେ ତୁମର ପୁରୁଷ ରୂପ ଫେରି ପାଇବ ।"

ଏହାପରି ଅଭୟ ପ୍ରଦାନ କରି ଭକ୍ତବାନ୍ଧବ ଜଗନ୍ନାଥ ଭକ୍ତ ସମ୍ମୁଖରୁ ଅଦୃଶ୍ୟ ହୋଇଗଲେ ।

ତତ୍ପର ଦିନ ପ୍ରଭାତରେ ମହାରାଜା ପ୍ରତାପରୁଦ୍ର ଦେବ ଓ ଅନ୍ୟ ପାରିଷଦମାନେ ଜଗନ୍ନାଥ ଦାସଙ୍କର ନାରୀରୂପ ଦେଖିବାକୁ ପାଇଲେ । ଏହି ଦୃଶ୍ୟରେ ସେମାନେ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ମଧ୍ୟ ବିଚଳିତ ହୋଇ ପଡ଼ିଲେ । ସମସ୍ତେ ଏକାଧାରରେ ଜଗନ୍ନାଥ ଦାସଙ୍କର ମହାନତା ସ୍ୱୀକାର କଲେ । ସମସ୍ତଙ୍କୁ ଆହୁରି ଆଶ୍ଚର୍ଯ୍ୟ କରି ଜଗନ୍ନାଥ ଦାସ ମଧ୍ୟ ନିଜ ଅଙ୍ଗରେ ରଜସ୍ୱଳା ନାରୀର ସମସ୍ତ ଲକ୍ଷଣ ପ୍ରଦର୍ଶନ କରିଥିଲେ । କେବଳ ସେତିକି ନୁହେଁ, ମହାରାଜା ସମେତ ସମସ୍ତ ପାରିଷଦ ଯେତେବେଳେ ଜଗନ୍ନାଥ ଦାସଙ୍କର ନାରୀରୂପ ଦର୍ଶନ କରି ଆଶ୍ଚର୍ଯ୍ୟ ଚକିତ ହେଉଥିଲେ, ଠିକ୍ ସେତିକିବେଳେ ନାରୀ ବେଶଧାରୀ ଜଗନ୍ନାଥଦାସଙ୍କର ବକ୍ଷୋଜ ଦ୍ୱୟରୁ କ୍ଷୀର ସ୍ରାବ ହେଲା । ଶିଶୁମନରେ ସେହି କ୍ଷୀରପାନ କରି ତାଙ୍କୁ କ୍ଷୀରରୋଧଜନିତ ପୀଡ଼ାରୁ ରକ୍ଷା କରିବା ପାଇଁ କୌଣସି ଜଣେ ସାଧକଙ୍କୁ ଜଗନ୍ନାଥ ଦାସ ନିଜ ନିକଟକୁ ଆହ୍ୱାନ କଲେ । ଜଗନ୍ନାଥ ଦାସଙ୍କର ଆହ୍ୱାନ କ୍ରମେ ସାଧକ ଅନନ୍ତ ଦାସ ଶିଶୁମନରେ ସେହି ମାତୃସ୍ତନ୍ୟ ପାନ କରିଥିଲେ । ତେଣୁ ସେହିଦିନଠାରୁ ସେ ଶିଶୁ ଅନନ୍ତ ଦାସ ନାମରେ ପରିଚିତ ହେଲେ ।

ମହାରାଜା ପ୍ରତାପରୁଦ୍ର ଦେବ ଜଗନ୍ନାଥ ଦାସଙ୍କୁ ବନ୍ଦୀ କରିଥିବାରୁ ସେଥିପାଇଁ ନିଜେ ଅନୁତପ୍ତ ହେଲେ ଏବଂ ତାଙ୍କୁ କ୍ଷମା–

ପ୍ରାର୍ଥନା କଲେ । ତାହାପରେ ସେ ଜଗନ୍ନାଥ ଦାସଙ୍କୁ ରାଜକୀୟ ସମ୍ମାନ ପ୍ରଦର୍ଶନ କରି ତାଙ୍କ ପାଇଁ ଜମିବାଡ଼ି ଖଞ୍ଜି ଦେଇଥିଲେ ଏବଂ ତାଙ୍କର ରହିବା ପାଇଁ ଗୋଟିଏ ମଠ ନିର୍ମାଣ କରାଇ ଦେଇଥିଲେ । ଜଗନ୍ନାଥ ଦାସ ସେହି ମଠରେ ଅବସ୍ଥାନ କରି ଜଗନ୍ନାଥ ମହାପ୍ରଭୁଙ୍କର ଗୁଣ କୀର୍ତ୍ତନରେ ମନୋନିବେଶ କରିଥିଲେ ।

ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଜୀବନର ଆଉ ଏକ ଅଲୌକିକ ଘଟନା...

ଥରେ କାଶୀର ଜଣେ ବିଖ୍ୟାତ ବୋଇତ ବ୍ୟବସାୟୀ ମହାରାଜା ପ୍ରତାପରୁଦ୍ର ଦେବଙ୍କୁ ଗନ୍ଧରାଜ ନାମକ ଅତି ମୂଲ୍ୟବାନ ଚନ୍ଦନ କାଠ ଖଣ୍ଡେ ଉପହାର ସ୍ୱରୂପ ଦେଇଥିଲେ । ମହାରାଜା ତାହାକୁ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗି କରାଇବା ନିମିତ୍ତ ଜଗନ୍ନାଥଦାସଙ୍କ ହସ୍ତରେ ଅର୍ପଣ କଲେ; ମାତ୍ର ଜଗନ୍ନାଥଦାସ ସେହି ମୂଲ୍ୟବାନ ଚନ୍ଦନକାଠ ଖଣ୍ଡିକ ଶ୍ରୀମନ୍ଦିରକୁ ନ ନେଇ ନିଜ ମଠକୁ ନେଇ ଆସିଲେ ଏବଂ ତାହାକୁ ଘୋରି ମଠ କାନ୍ଥରେ ବୋଳିଦେଲେ । ସଙ୍ଗେ ସଙ୍ଗେ ଏହି ସମ୍ବାଦ ମହାରାଜାଙ୍କର କର୍ଣ୍ଣଗୋଚର ହେଲା । ସେ ଜଗନ୍ନାଥଦାସଙ୍କୁ ଡକାଇ ଘୋର ବିରକ୍ତି ପ୍ରକାଶପୂର୍ବକ କହିଲେ—"ଜଗନ୍ନାଥ ! ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଅଙ୍ଗରେ ଲାଗି କରାଇବା ପାଇଁ ମୁଁ ତୁମ ହସ୍ତରେ ମୂଲ୍ୟବାନ ଚନ୍ଦନକାଠ ଅର୍ପଣ କରିଥିଲି; ମାତ୍ର ତୁମେ ମୋର ଆଦେଶକୁ ଅବଜ୍ଞା କରି ସେହି ଚନ୍ଦନକାଠକୁ ଘୋରି ନିଜ ମଠ କାନ୍ଥରେ ବୋଳିଅଛ । ଏପରି ଗର୍ହିତ କାର୍ଯ୍ୟକୁ ମୁଁ କେବଳ ମୋ ନିଜର ଅପମାନ ବୋଲି ମନେ କରୁନାହିଁ, ବରଂ ଏହାକୁ ମୁଁ ଜଗନ୍ନାଥ ମହାପ୍ରଭୁଙ୍କର ଅପମାନ ବୋଲି ମନେ କରୁଛି ।"

ଜଗନ୍ନାଥ ଦାସ ବିନୀତ ସ୍ୱରରେ କହିଲେ—"ମହାରାଜ ! ଜଗନ୍ନାଥ ମହାପ୍ରଭୁ ସର୍ବତ୍ର ବିଦ୍ୟମାନ । ସେ କେବଳ ଗୃହକାନ୍ଥ ଘେରା ଶ୍ରୀମନ୍ଦିରରେ ଆବଦ୍ଧ ନୁହନ୍ତି, ବରଂ ପ୍ରତି ଅଣୁ ପରମାଣୁରେ ତାଙ୍କର ସତ୍ତା ପରିବ୍ୟାପ୍ତ । ରତ୍ନ ସିଂହାସନ ଉପରେ ବସି ସେ ଯେପରି ଭକ୍ତମାନଙ୍କୁ ଅମିୟ ଆନନ୍ଦ ପ୍ରଦାନ କରନ୍ତି, ଠିକ୍ ସେହିପରି ସେ ମୋର ମଠ କାନ୍ଥରେ ଅବସ୍ଥାନ କରି ମୋର ଅଭୀଷ୍ଟ ପୂରଣ କରନ୍ତି । ତେଣୁ ମୁଁ ଆପଣଙ୍କର ଆଦେଶ ଅବଜ୍ଞା କରିନାହିଁ, ବରଂ ଆପଣଙ୍କର ଆଦେଶ ଅନୁସାରେ ସେହି ମୂଲ୍ୟବାନ୍ ଚନ୍ଦନ ମହାପ୍ରଭୁଙ୍କର ଶ୍ରୀଅଙ୍ଗରେ ଲିଗି କରାଇଛି ।"

ଜଗନ୍ନାଥ ଦାସଙ୍କର ଏପରି ଉତ୍ତରରେ ମହାରାଜା ପ୍ରତାପରୁଦ୍ର ଦେବ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ତେଣୁ ରାଜାଙ୍କୁ ସନ୍ତୁଷ୍ଟ କରିବାପାଇଁ ଜଗନ୍ନାଥ ଦାସ ପୁଣି କହିଲେ—"ମହାରାଜ ! ଆପଣ ଯଦି ମୋ କଥାକୁ ଅବିଶ୍ୱାସ କରୁଛନ୍ତି, ତେବେ ଶ୍ରୀମନ୍ଦିରକୁ ଯାଇ ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରୀଅଙ୍ଗ ଦର୍ଶନ କରନ୍ତୁ । ଆପଣଙ୍କର ସେହି ମୂଲ୍ୟବାନ ଚନ୍ଦନ ଜଗନ୍ନାଥ ମହାପ୍ରଭୁଙ୍କର ଶ୍ରୀଅଙ୍ଗରେ ଲିଗି କରାଯାଇଛି କି ନାହିଁ, ସେଠାରେ ତାହାର ପ୍ରତ୍ୟକ୍ଷ ପ୍ରମାଣ ପାଇ-ପାରିବେ ।"

ଜଗନ୍ନାଥ ଦାସଙ୍କ କଥାକୁ ବିଶ୍ୱାସ କରି ମହାରାଜା ପ୍ରତାପରୁଦ୍ର ଦେବ ଶ୍ରୀମନ୍ଦିରକୁ ଗମନ କଲେ । ସେଠାରେ ସେ ଦେଖିବାକୁ ପାଇଲେ, ଜଗନ୍ନାଥ ମହାପ୍ରଭୁ ରତ୍ନସିଂହାସନ ଉପରେ ବସି ଅଭିନବ ବେଶରେ ମଣ୍ଡିତ ହୋଇଛନ୍ତି ଏବଂ ତାଙ୍କ ଶ୍ରୀଅଙ୍ଗରେ ସେହି ମୂଲ୍ୟବାନ ଚନ୍ଦନ ଯଥାରୀତି ଲିଗି କରାଯାଇଛି । ସେହି ମୂଲ୍ୟବାନ ଚନ୍ଦନର ସୁବାସରେ ଶ୍ରୀମନ୍ଦିରର ଅଭ୍ୟନ୍ତର ମହକ

ଉଠୁଛି । ରାଜା ଏପରି ଦୃଶ୍ୟ ଦେଖି ଯେତିକି ବିସ୍ମିତ ହେଲେ, ସେତିକି ଆନନ୍ଦ ମଧ୍ୟ ଅନୁଭବ କଲେ । ସଙ୍ଗେ ସଙ୍ଗେ ସେ ଜଗନ୍ନାଥ ଦାସଙ୍କ ମଠକୁ ଗମନକରି ନିଜର ଭୁଲପାଇଁ ତାଙ୍କ ନିକଟରେ କ୍ଷମାଭିକ୍ଷା କଲେ ଏବଂ ତାଙ୍କୁ ରାଜକୀୟ ସମ୍ବର୍ଦ୍ଧନା ଜ୍ଞାପନ କରି ଜଗନ୍ନାଥ ମହାପ୍ରଭୁଙ୍କର ଜଣେ ଶ୍ରେଷ୍ଠ ଭକ୍ତ ଭାବରେ ତାଙ୍କର ମହିମା କୀର୍ତ୍ତନ କଲେ ।

ପ୍ରଭୁ ଜଗନ୍ନାଥ ! ତୁମେ ନିଜ ମହିମାରେ ଯେତିକି ମହିମାନ୍ୱିତ ହୋଇଅଛ, ନିଜର ଭକ୍ତକୁ ମଧ୍ୟ ସେତିକି ମହିମାନ୍ୱିତ କରିଅଛ । ବାସ୍ତବରେ ତୁମ ମହିମାର କୂଳ ନାହିଁ କି କିନାରା ନାହିଁ !



# ଦୀନକୃଷ୍ଣ ଦାସ ଓ ଶ୍ରୀଜଗନ୍ନାଥ

କୃଷ୍ଣ ଆଶ୍ରେକର ସୁବିଦ୍ୟା ଆଚର
ପାଷାଣ୍ଡକୁ ଯାହା ସୁଡ,
କୃଷ୍ଣ ଦାସ କହେ କିଛି ଭଲ ନୋହେ
କେବଳ ଗ୍ରନ୍ଥକ କାନ୍ତି ।
(ରସ କଲ୍ଲୋଳ ; ୨୪।୩୦)

ସୌଭାଗ୍ୟବଶତଃ ଯେଉଁ ବ୍ୟକ୍ତି ଭଗବାନ କୃଷ୍ଣଚନ୍ଦ୍ରଙ୍କର ଆଶ୍ରୟ ଗ୍ରହଣ କରେ, ସେ ଯେତେ ଦାରିଦ୍ର୍ୟ ମଧ୍ୟରେ ଗତିକଲେ ମଧ୍ୟ ତା' ହୃଦୟରେ କୌଣସି ପ୍ରକାର ଭୟ ସ୍ଥାନ ପାଏନାହିଁ । ସର୍ବ-ଭୟ-ହର ପରମେଶ୍ୱରଙ୍କର ଆଶ୍ରୟ ଗ୍ରହଣ କରିଥିବାରୁ ସେ ସମସ୍ତ ପ୍ରକାର ଭୟରୁ ମୁକ୍ତ ହୋଇ ନିର୍ଭୟ ହୋଇଯାଏ । ଅବିରତ ମୁଖରେ କୃଷ୍ଣନାମ କୀର୍ତ୍ତନ କରି ଦୁଃଖେ ସୁଖେ ସେ ନିଜର ସମୟ ଅତିବାହିତ କରିଦିଏ । ଧନ ପାଇଁ କିମ୍ବା ମାନ ସମ୍ମାନ ପାଇଁ ସେ କୌଣସି ଇତର ବ୍ୟକ୍ତିର ପ୍ରଶସ୍ତି ଗାନ କରେ ନାହିଁ । ଅବଶ୍ୟ ରାଜା ମହାରାଜାମାନଙ୍କର ପ୍ରଶସ୍ତି ଗାନ କରିବାପାଇଁ ରାଜସଭାରେ ବହୁ ଗୁଣୀ ଜ୍ଞାନୀ ପଣ୍ଡିତ ନିଯୁକ୍ତ ହୋଇଥାନ୍ତି; କିନ୍ତୁ କୌଣସି ପ୍ରସିଦ୍ଧ ଭକ୍ତ କବିଙ୍କ ମୁଖରୁ ସେପରି ପ୍ରଶସ୍ତି ଗାନ ଆଶାକରିବା ବୃଥା । ଭକ୍ତ ଯେତେ କବିତ୍ୱଶକ୍ତି ଲାଭ କରିଥିଲେ ମଧ୍ୟ ସେ କୌଣସି

ପାର୍ଥିବ ମନୁଷ୍ୟର ପ୍ରଶସ୍ତିଗାନ ନ କରି ନିଜର ଆରାଧ୍ୟ ଦେବତା ପରମେଶ୍ୱରଙ୍କର ପ୍ରଶସ୍ତିଗାନରେ ଶତମୁଖ ହୋଇ ଉଠନ୍ତି । ତାଙ୍କ ନିକଟରେ ରାଜଭୟ କିମ୍ବା ରାଜ-ପ୍ରଲୋଭନ ହାରି ମାନିଯାଏ ।

ଭକ୍ତକବି ଘନକୃଷ୍ଣ ଦାସ ଥିଲେ ଏହିପରି ଜଣେ ନିର୍ଭୀକ ଭକ୍ତ । ସେ ନିଜର ସୁପ୍ରସିଦ୍ଧ କାବ୍ୟ "ରସ କଲ୍ଲୋଳ"ରେ ଉପରୋକ୍ତ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ, ତାହା ସେ ନିଜ ଜୀବନରେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଓଡ଼ିଆ ସାହିତ୍ୟର ଆଲୋଚକଗଣ ଘନକୃଷ୍ଣ ଦାସଙ୍କୁ ଜଣେ ଶ୍ରେଷ୍ଠକବି ହିସାବରେ ଗଣନା କଲେ ମଧ୍ୟ ଧର୍ମପ୍ରାଣ ଓଡ଼ିଆମାନଙ୍କ ନିକଟରେ ସେ ଜଣେ ପ୍ରସିଦ୍ଧ ଜଗନ୍ନାଥ-ଭକ୍ତ । ତାଙ୍କର ସୁପ୍ରସିଦ୍ଧ "ଆର୍ତ୍ତତ୍ରାଣ ଚଉତିଶା" ପ୍ରମାଣ କରିଦିଏ ଯେ ସେ କେବଳ କବି ହିସାବରେ ବିଖ୍ୟାତ ନୁହନ୍ତି ବରଂ ତାଙ୍କର ଅନନ୍ୟ ଭକ୍ତିପାଇଁ ସେ ସୁଧୀ ସମାଜର ନମସ୍ୟ ଓ ପୂଜ୍ୟ ।

ଘନକୃଷ୍ଣ ଥିଲେ ଅତ୍ୟନ୍ତ ଦରିଦ୍ର । ସେ ନିଜର ପରିବାର ସହିତ ଶ୍ରୀକ୍ଷେତ୍ରରେ ବାସ କରୁଥିଲେ ଏବଂ ଭିକ୍ଷା ଉପରେ ନିର୍ଭର କରି ଜୀବନ ଅତିବାହିତ କରୁଥିଲେ । ଅତି ବାଲ୍ୟକାଳରୁ ତାଙ୍କ ମଧ୍ୟରେ ଅଦ୍ଭୁତ କବିତ୍ୱଶକ୍ତି ଜାଗ୍ରତ ହୋଇଥିଲା । ମୁହେଁ ମୁହେଁ ପଦମାନ ଯୋଡ଼ି ସେ ବିଭିନ୍ନ ପ୍ରକାର କବିତା ରଚନା କରୁଥିଲେ ଏବଂ ନିଜର ସାଙ୍ଗ ସାଥୀମାନଙ୍କୁ ତାହା ଶୁଣାଇ ପରମ ତୃପ୍ତି ଅନୁଭବ କରୁଥିଲେ । ତାଙ୍କର ଯେପରି କବିତ୍ୱ ଶକ୍ତି ଥିଲା, ସେହିପରି ମଧ୍ୟ ଭକ୍ତିଭାବ ଥିଲା । ବୟସ ବଢ଼ିବା ସଙ୍ଗେ ସଙ୍ଗେ ସେ ବହୁ ପ୍ରକାର କାବ୍ୟ କବିତା ରଚନା କରି ପ୍ରସିଦ୍ଧି ଅର୍ଜନ କଲେ; କିନ୍ତୁ ତାଙ୍କର ପ୍ରତି କାବ୍ୟରେ

ଭଗବାନଙ୍କର ଲୀଳା ଓ ତାଙ୍କର ଗୁଣ କୀର୍ତ୍ତନ ବର୍ଣ୍ଣିତ ହୋଇଥିଲା । ସେ କୃଷ୍ଣଚରିତ ବର୍ଣ୍ଣନା କରିବାକୁ ବିଶେଷ ଭଲ ପାଉଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ଅବସ୍ଥାନ କରୁଥିବାରୁ ସେ ମଧ୍ୟ ଜଗନ୍ନାଥଙ୍କର ଗୁଣ କୀର୍ତ୍ତନ କରି ଅନେକ କାବ୍ୟ କବିତା ରଚନା କରିଥିଲେ । ତାଙ୍କର କୃତିମାନଙ୍କ ମଧ୍ୟରେ କେତେକ ପ୍ରସିଦ୍ଧ କୃତି ହେଉଛି— ରସ କଲ୍ଲୋଳ' ଚନ୍ଦ୍ରଧର ବିଳାସ, ମଧୁସୂଦନ ବିଳାସ, ଆର୍ତ୍ତତ୍ରାଣ ଚଉତିଶା, ବାରମାସ କୋଇଲି; ଗୁଣ୍ଡିଚା ବିଜେ, ଦ୍ୱାଦଶ କୁଞ୍ଜଲୀଳା, କୃଷ୍ଣଦାସ ବୋଲି, ନାବକେଳି, ରାଧା କବଚ, ରସ ବିନୋଦ, ଗୁଣ ସାଗର, ଭୂତକେଳି, ସଂସାର ବୋଧ, ଅମୃତ ସାଗର, ମୁକ୍ତି ସାଗର, ପ୍ରସ୍ତାବ ସିନ୍ଧୁ, ଜଗମୋହନ ଛାନ୍ଦ, ନାମରତ୍ନ ଗୀତା ଏବଂ ମହିମାସାର ।

ଘନକୃଷ୍ଣ ଦରିଦ୍ର ଭିକ୍ଷୁକ ଥିବାରୁ ଶ୍ରୀକ୍ଷେତ୍ରର ବଡ଼ଦାଣ୍ଡରେ ଭିକ୍ଷା ମାଗି ବୁଲୁଥିଲେ । ଭିକ୍ଷା ମାଗିବା ସମୟରେ ତାଙ୍କ ମୁଖରେ ଜଗନ୍ନାଥଙ୍କର ରୂପ, କୀର୍ତ୍ତି ଓ ମହିମା ନିମ୍ନୋକ୍ତ ଭାବେ ଘୋଷିତ ହେଉଥିଲା—

"କର ସାଧୁଜନମାନେ ମନକୁ ଏକ,
କର ଧୀରେ ଧ୍ୟାନ ନୀଳାଚଳ ନାୟକ ।
କମନୀୟ ଶ୍ରୀମୁଖ ଚନ୍ଦ୍ରରୁ ଅଧିକ,
କଲେ ଦର୍ଶନ ନ ରହେ ସଂସାର ଶୋକ ।
କମଳ ନୟନ ଗୋଟି ସୁଖଦାୟକ,
କଳା ଡୋଳା ଭ୍ରମର ଚୁମ୍ବିଲ ପ୍ରାୟେକ ।
କପାଳେ ସୁବର୍ଣ୍ଣ ଚିତ୍ରରେଖା ଝଲକ,
କାହିଁ ଲୋକ ଅଙ୍ଗ ନ କରଇ ପୁଲକ ।

କମ୍ବୁ ନୁହଇ ଅମ୍ବର ସୁରଙ୍ଗ ଦେଖନ୍ତ,
କବି ଜଡ଼ ହୋଏ ଯାହା କରି ବିଲୋକ ।
କର୍ଣ୍ଣେ ମକର କୁଣ୍ଡଳ ଘୋଲେ ଝଳକ,
କରେ କଟି ବାହୁଟି ହୃଦେ ପଦକ ।
କମ୍ବୁକଣ୍ଠେ କଉସ୍ତୁଭମଣି ନାୟକ,
କଲୁଷ-ଅନ୍ଧକାରକୁ ଦିନ-ନାୟକ ।
କଳିତ ଲଳିତ ଫୁଲମାଳ ଅନେକ,
କରଇ ବଶ ଅବଶ୍ୟ ତ୍ରୈଲୋକ୍ୟ ଲୋକ ।
କଳ୍ପବୃକ୍ଷେ ନାନାରତ୍ନ ଫଳ ପ୍ରାପ୍ତକ,
କଳାପି-କଳାପେ ଶୋଭା ଶ୍ରୀଅଙ୍ଗ ଯାକ ।
କରେ ଶଙ୍ଖଚକ୍ର କଷ୍ଟ-ଦୁଷ୍ଟ-ମାରକ,
କର୍ପୂର ଚନ୍ଦନେ ଆହ୍ଲାଦ କାରକ ।
କନକ କଙ୍କିଣୀ ପୀତାମ୍ବର ଧାରକ,
କରୁଣା କଟାକ୍ଷ ସୁର-ନର-ତାରକ ।
କମ୍ବୁ କଣ୍ଠକ ମଧ୍ୟରେ ନାଗର ଏକ
କଉତୁକ କଥାମାନଙ୍କରେ ରସିକ ।

X X X

କଚ୍ଛପ ମତ୍ସ୍ୟାଦି ଅବତାର ଯେତେକ,
କରିବାକୁ ଜାତ ଜଗନ୍ନାଥ ଜନକ ।
କହି ନୋହେ ତାହାଙ୍କ ମହିମା ଯେତେକ,
କରନ୍ତୁ କୃତାର୍ଥ ଜୀବ ହରି, ପାତକ ।”

(ରସ କଲ୍ଲୋଳ : ପ୍ରଥମ ଛାନ୍ଦ)

ଘନକୃଷ୍ଣଙ୍କର ଏପରି ଲାଳିତ୍ୟପୂର୍ଣ୍ଣ ସୁମଧୁର କବିତା ଶୁଣି ଶ୍ରୀକ୍ଷେତ୍ରର ଅଧିବାସିଗଣ ମନ୍ତ୍ରମୁଗ୍ଧ ହୋଇ ଯାଉଥିଲେ । ତେଣୁ

ଘନକୃଷ୍ଣ କେବଳ ଜଣେ ଭିକ୍ଷୁକ ଭାବରେ ପରିଚିତ ନଥିଲେ, ବରଂ ତାଙ୍କର କୀର୍ତ୍ତି ଚତୁର୍ଦ୍ଦିଗରେ ପ୍ରଚାରିତ ହେବାରୁ ସେ ଜଣେ ପ୍ରସିଦ୍ଧ ଭକ୍ତ କବି ଭାବରେ ଖ୍ୟାତି ଅର୍ଜନ କଲେ ।

ଘନକୃଷ୍ଣଙ୍କ ସମୟରେ ପୁରୀର ଶାସନକର୍ତ୍ତା ଥିଲେ ଗଜପତି ମହାରାଜା ଦିବ୍ୟସିଂହ ଦେବ । ଥରେ ରାଜାଙ୍କର ପଣ୍ଡିତ-ସଭାରେ ଘନକୃଷ୍ଣଙ୍କର ପ୍ରତିଭା ସମ୍ବନ୍ଧରେ ଆଲୋଚନା ହେଉଥିଲା । ରାଜା ସେହି ଆଲୋଚନା ଶୁଣି ଘନକୃଷ୍ଣଙ୍କ ମୁଖରୁ କବିତା ଶୁଣିବାପାଇଁ ଆଗ୍ରହ ପ୍ରକାଶ କଲେ ଏବଂ ଦୂତ ପ୍ରେରଣକରି ତାଙ୍କୁ ଡକାଇ ଆଣିଲେ ।

ଘନକୃଷ୍ଣ ରାଜସଭାରେ ଉପସ୍ଥିତ ହେବା ମାତ୍ରେ ରାଜା ତାଙ୍କୁ କବିତା ଶୁଣାଇବା ପାଇଁ ଅନୁରୋଧ କଲେ । ରାଜାଙ୍କ ଅନୁରୋଧ ରକ୍ଷାକରି ଘନକୃଷ୍ଣ ସୁମଧୁର ଛନ୍ଦରେ କୃଷ୍ଣଚରିତ ଗାନ କରିବାକୁ ଲାଗିଲେ । ତାହା ଶ୍ରବଣକରି ରାଜା ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ଘନକୃଷ୍ଣଙ୍କୁ ନାନାଦି ଅଳଙ୍କାର ଓ ବହୁ ଧନ, ବସ୍ତ୍ର ଉପହାର-ସ୍ୱରୂପ ପ୍ରଦାନ କଲେ । ସଭାରେ ଯେତେ ଲୋକ ଉପସ୍ଥିତ ଥିଲେ, ସମସ୍ତେ କବିଙ୍କର ପ୍ରଶଂସା ଗାନ କଲେ । ତାହାପରେ ଘନକୃଷ୍ଣଙ୍କୁ ଲକ୍ଷ୍ୟକରି ରାଜା କହିଲେ—"ହେ ଘନକୃଷ୍ଣ ! ତୁମର ସୁଲଳିତ କଣ୍ଠରୁ ମଧୁର କବିତା ଶୁଣି ମୁଁ ଅତ୍ୟନ୍ତ ଆନନ୍ଦିତ ହୋଇଛି । ତୁମେ ଭଗବାନ କୃଷ୍ଣଙ୍କର ପ୍ରଶସ୍ତି ଗାନକରି ନିଜର ଭଗବଦ୍-ପ୍ରଶସ୍ତିପୂର୍ଣ୍ଣ ଭକ୍ତିର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପ୍ରଦର୍ଶନ କରିଛ । ଏବେ ତୁମେ ମୋର ଗୋଟିଏ କବିତା ରଚନା କରି ନିଜର ରାଜଭକ୍ତି ପ୍ରଦର୍ଶନ କର । ତାହାହେଲେ ତୁମକୁ ମୁଁ ଆହୁରି ଅଧିକ ଧନରତ୍ନ ପ୍ରଦାନ କରିବି ଏବଂ ତୁମର ଦାରିଦ୍ର୍ୟ ଦୂର କରିବି ।"

ଯାହାଙ୍କ ହୃଦୟରେ କେବଳ ଭଗବାନ କୃଷ୍ଣଚନ୍ଦ୍ର ବିରାଜିତ, ଯାହାଙ୍କ ମନ କେବଳ ଜଗନ୍ନାଥଙ୍କର ପାଦପଦ୍ମରେ ନିମଜ୍ଜିତ, ସେ ଜଣେ ନଶ୍ୱର ମାନବର ପ୍ରଶସ୍ତି ଗାନ କରିବେ କିପରି ? ରାଜାଙ୍କର ଅହଙ୍କାରପୂର୍ଣ୍ଣ ବାକ୍ୟ ଶୁଣି ଧନକୃଷ୍ଣ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ତାଙ୍କର ପ୍ରଶସ୍ତି ଗାନ କରିବାକୁ ସମ୍ପୂର୍ଣ୍ଣ ବାରଣ କରିଦେଲେ । ରାଜା ଗ୍ରାମ, ଦେଶ ଓ ରାଜ୍ୟର ଅଧିକାର ଯାଚି ପୁନର୍ବାର ଭକ୍ତ-କବିଙ୍କୁ ଉପରୋକ୍ତ ଅନୁରୋଧ କଲେ ଏବଂ ସେହି ଅନୁରୋଧ ରକ୍ଷା ନ କଲେ ତାଙ୍କୁ ପ୍ରାଣଦଣ୍ଡରେ ଦଣ୍ଡିତ କରିବେ ବୋଲି ଧମକ ଦେଲେ; ମାତ୍ର ଭକ୍ତକବି ନିଜର ସିଦ୍ଧାନ୍ତରେ ଅବିଚଳିତ ରହି କହିଲେ—

"× × × । ଶୁଣ ହେ ନୃପ ଚୂଡ଼ାମଣି ।
ତୁମ୍ଭଙ୍କୁ ନାହିଁ ମୋର ଡ଼ର । ମୋ ପ୍ରଭୁ ବଳେ ବଳିଆର ।
ଜଗତ ସୃଷ୍ଟି ଆନ ହେଲେ । ଗୀତ ମୁଁ ଆନକୁ ନ ବୋଲେ ।"
(ଦାର୍ଢ୍ୟତା ଭକ୍ତି)

ଧନକୃଷ୍ଣଙ୍କର ଏପରି ଦୃଢ଼ବାକ୍ୟ ଶ୍ରବଣକରି ରାଜା ବୀର୍ଯ୍ୟସିଂହଦେବ ଅତ୍ୟନ୍ତ କ୍ରୁଦ୍ଧ ହୋଇ ପଡ଼ିଲେ ଏବଂ ତାଙ୍କୁ ବନ୍ଦୀକରି କାରାକକ୍ଷରେ ନିକ୍ଷେପ କରିବା ପାଇଁ ସେବକମାନଙ୍କୁ ନିର୍ଦ୍ଦେଶ ଦେଲେ ।

ସଙ୍ଗେ ସଙ୍ଗେ ରାଜାଙ୍କର ନିର୍ଦ୍ଦେଶ ପାଳିତ ହେଲା । ଫଳରେ ଧନକୃଷ୍ଣ ବନ୍ଦୀଗୃହରେ ଆବଦ୍ଧହୋଇ ରହିଲେ । ତାଙ୍କ ହସ୍ତ ଓ ପାଦରେ ଲୁହାର ଶାଙ୍କୋଳି ବାନ୍ଧି ଦିଆଗଲା ।

ରାଜାଙ୍କର ଏପରି ଆଚରଣରେ ଧନକୃଷ୍ଣ ଦୁଃଖ କରି ନ ଥିଲେ; କିନ୍ତୁ ଜଗନ୍ନାଥଙ୍କର ଭକ୍ତ ହୋଇ ତାଙ୍କୁ ଯେ ଏପରି ଅପମାନ

ସନ୍ଧ୍ୟା କରିବାକୁ ପଡ଼ିଲା, ତାହା ଚିନ୍ତାକରି ତାଙ୍କ ହୃଦୟରେ ଦାରୁଣ କ୍ରୋଧ ଜାତ ହେଲା । ନେତ୍ରଦ୍ୱୟରୁ ଅଶ୍ରୁର ବନ୍ୟା ଛୁଟି ତାଙ୍କର ଗଣ୍ଡମଣ୍ଡଳ ସିକ୍ତ କଲା । ଦିନର ଅବସାନ ଘଟି ରାତ୍ରିର ଘନାନ୍ଧକାର ଯେତେବେଳେ ପୃଥିବୀବକ୍ଷକୁ ମାଡ଼ି ଆସିଲା, ସେତେବେଳେ ସେ ଅଧିକ ଦୁଃଖରେ ଅଧୀର ହୋଇ ପଡ଼ିଲେ । ଅଭିମାନଭରା କଣ୍ଠରେ ସେ ଜଗନ୍ନାଥଙ୍କୁ ପ୍ରାର୍ଥନା କରି କହିଲେ—

"ଜୟ ନୀଳାଦ୍ରି ସିଂହ ବର । ମୋର ଆରତ ବିଜଆର ।
ରଖହେ କୃଷ୍ଣଦାସ ପ୍ରାଣ । ବାରଣ ଆର୍ତ୍ତି ନିବାରଣ ।
ରଖ ସେବକ ଯଶକାଶ । ଘୁଞ୍ଚୁ ତନୟା ମନୋହାଶ ।
ଏ ମହାସଙ୍କଟ ବିଜନ । ଫେଡ଼ ହେ ଶ୍ରୀନନ୍ଦନନ୍ଦନ ।
ରଖ ବିରଜ ଦୁଃଖ ହର । ଏ ଦୃଢ଼ ବନ୍ଧନୁ ଉଦ୍ଧର ।
ହେ ସୁଦର୍ଶନ ଚକ୍ରଧର । ମୋ ଆର୍ତ୍ତି ନକ୍ରକୁ ନିବାର ।
ତୁମ୍ଭେ ନ ରଖିଲେ ଗୋସାଇଁ । ଏଠାରେ ମୋର ସାହା ନାହିଁ ।
ତୋ ଯଶ ଚନ୍ଦ୍ର ଉଦେ କର । ମୋ ଆର୍ତ୍ତି ଅନ୍ଧକାର ହର ।
ତୁମ୍ଭେ ନ ରଖିଲେ ନିଶ୍ଚିତ । ମୋର ମରଣ ହେଲା ସତ ।
ଦାସ ବିନାଶ ହେଲେ ସତେ । କି ବୋଲି ବୋଲିବେ ଜଗତେ ।
ଏଥିକୁ ହୃଦରେ ବିଚାର । ମୋର ମରଣେ ନାହିଁ ଡର ।
ସଂସାର ମଧ୍ୟେ ମହାବାହୁ । ମହିମା ରହିବ ଅସ୍ତନୋହୁ ।
ଲୋକେ ବୋଲିବେ କୃଷ୍ଣଦାସ । କୃଷ୍ଣ ଚରଣେ କଲା ଆଶ ।
ତାର ବିନାଶ କାଳେ ହରି । ପାରିଲେ ନାହିଁ ରକ୍ଷାକରି ।
ଆଉ କିମ୍ପାଇଁ ଏ ସଂସାରେ । ଭଜିବେ ଶ୍ରୀହରି ପଦ୍ମରେ ।
ଜଗତେ ଏହା ପ୍ରକାଶିବ । ମହିମା ନାଉନ ଦିଶିବ ।
ଏଥିକୁ ଚାହିଁ ମୋର ଦୁଃଖ । ଖଣ୍ଡ ହେ ପୁଣ୍ଡରୀକ ମୁଖ ।
ଏ ଦଣ୍ଡଧର ଦଣ୍ଡୁ ମୋତେ । ଉଦ୍ଧର ଧରି ତୋର ହସ୍ତେ ।"

(ଦାର୍ଢ୍ୟତା ଭକ୍ତି)

ଏହିପରି ଆକୁଳ ପ୍ରାର୍ଥନା କରି ଭକ୍ତ କବି ଘନକୃଷ୍ଣ ତାଙ୍କ ନେତ୍ରଦ୍ୱୟରୁ ଅଜସ୍ର ଅଶ୍ରୁ ଝରାଇବାକୁ ଲାଗିଲେ ।

ଭକ୍ତର ମନୋବାଞ୍ଛା ପୂରଣ କରିବା ପାଇଁ ଯିଏ ରତ୍ନ-ସିଂହାସନ ଉପରେ ବିରାଜମାନ କରିଛନ୍ତି, ଭକ୍ତର ଦୁଃଖ ଯିଏ ନିଜ ହୃଦୟରେ ଅନୁଭବ କରିପାରନ୍ତି ଏବଂ ଭକ୍ତର ଅପମାନକୁ ଯିଏ ନିଜର ଅପମାନ ବୋଲି ମନେକରି ଯଥାଶୀଘ୍ର ତାହାର ପ୍ରତିକାର କରନ୍ତି, ସେହି ପ୍ରଭୁ ଜଗନ୍ନାଥ ନିଜର ପ୍ରେମୀ ଭକ୍ତ ଘନକୃଷ୍ଣଙ୍କର ଏପରି ଆକୁଳ ପ୍ରାର୍ଥନା ଶୁଣି କି ଥୟଧରି ରହିପାରନ୍ତେ ? ସଙ୍ଗେ ସଙ୍ଗେ ସେ ଶ୍ରୀମନ୍ଦିରରୁ ବାହାରି ଭକ୍ତ ସମ୍ମୁଖରେ ଉପସ୍ଥିତ ହେଲେ । ତାଙ୍କର ଉପସ୍ଥିତିରେ କାରାକକ୍ଷର ଘନାନ୍ଧକାର ବିଦୂରିତ ହୋଇ ସେଠାରେ ଦିବ୍ୟାଲୋକର ଉଜ୍ଜ୍ୱଳ ଜ୍ୟୋତି ବିଚ୍ଛୁରିତ ହେଲା ଏବଂ ଘନକୃଷ୍ଣଙ୍କ ହସ୍ତ ପାଦର ଶୃଙ୍ଖଳ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ିଲା । ଜଗନ୍ନାଥଙ୍କ ଦର୍ଶନ ପାଇ ଭକ୍ତକବି ନିଜର ଜୀବନକୁ କୃତକୃତ୍ୟ ମନେକଲେ ଏବଂ ଆନନ୍ଦରେ ଅଧୀର ହୋଇ ତାଙ୍କର ପାଦପଦ୍ମରେ ଲୋଟି ପଡ଼ିଲେ । ଭଗବାନ ଭକ୍ତଙ୍କୁ ଆଲିଙ୍ଗନକରି କହିଲେ— "ରାଜାଙ୍କର ଏପରି ନିଷ୍ଠୁର ଆଚରଣରେ ଦୁଃଖ କରନି ଘନକୃଷ୍ଣ ! ଅତିଶୀଘ୍ର ତୁମର ସବୁ ଦୁଃଖ କଷ୍ଟ ଦୂରୀଭୂତ ହେବ ।"

ଏପରି ଅଭୟବାକ୍ୟ ଉଚ୍ଚାରଣ କରି ପ୍ରଭୁ ଜଗନ୍ନାଥ ଭକ୍ତଙ୍କୁ ଦିବ୍ୟଭୋଜନ ଅର୍ପଣ କଲେ ଏବଂ ତତ୍କ୍ଷଣାତ୍ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଘନକୃଷ୍ଣ ସେହି ଭୋଜନ ଗ୍ରହଣ କରି ପ୍ରଭୁଙ୍କର ଗୁଣ-କୀର୍ତ୍ତନ କରିବାକୁ ଲାଗିଲେ ।

ସେହିଦିନ ରାତିରେ ମହାରାଜା ଦିବ୍ୟସିଂହ ଦେବ ସ୍ୱପ୍ନରେ ଜଗନ୍ନାଥଙ୍କର ଦର୍ଶନ ପାଇଲେ । ଜଗନ୍ନାଥ ଦର୍ଶନ ଦେଇ କହିଲେ—

"× × ପ୍ରାଣେ ଯେବେ ଆଶ । ଛାଡ଼ି ତୁ ଦିଅ କୃଷ୍ଣଦାସ ।
ନୋହିଲେ ତୁ ନଷ୍ଟ ମରିବୁ । ଭୃତ୍ୟଙ୍କୁ କି କରିପାରିବୁ ।"

( ଦାର୍ଢ଼୍ୟତା ଭକ୍ତି )

ହଠାତ୍ ରାଜାଙ୍କର ନିଦ୍ରାଭଙ୍ଗ ହେଲା । ଏକ ଅପ୍ରୀତିକର ଭୟରେ ସେ ଥରିବାକୁ ଲାଗିଲେ । ଯେକୌଣସି ପ୍ରକାରେ ରାତି କଟାଇ ପ୍ରଭାତ ହେବା ମାତ୍ରେ ସେ ନିଜେ ବନ୍ଦିଶାଳାକୁ ଧାଇଁଗଲେ । ଦେଖିଲେ, ବନ୍ଦିଶାଳାର ଦ୍ୱାର ଉନ୍ମୁକ୍ତ ହୋଇଛି । ବନ୍ଦିଗୃହରେ ଏକ ଦିବ୍ୟ ଆଲୋକର ସ୍ଫୁରଣ ଘଟିଛି ଏବଂ ତାହା ଏକ ଅଭିନବ ସ୍ୱର୍ଗୀୟ ସୁଗନ୍ଧରେ ମହକି ଉଠୁଛି । ସେତେବେଳେ ଭକ୍ତ ଧନକୃଷ୍ଣ ଭଗବାନଙ୍କର ମହିମା ଗାନକରି ମୁଗ୍ଧ ହେଉଥିଲେ; ତାଙ୍କ ହସ୍ତ-ପଦର ଶାଙ୍କୋଳି ବନ୍ଧନ ଖୋଲି ଯାଇଥିଲା । ରାଜା ଏହିସବୁ ଅପୂର୍ବ ଦୃଶ୍ୟ ଦେଖି ଚମତ୍କୃତ ହେଲେ । ସେ ଧନକୃଷ୍ଣଙ୍କୁ ଆଲିଙ୍ଗନପୂର୍ବକ ନିଜର ଅହଙ୍କାର ପାଇଁ କ୍ଷମା ପ୍ରାର୍ଥନା କରି କହିଲେ—

"× × ଧନ୍ୟ ତୋ ଜୀବନ । ତୋତେ ଦେଖିଲି ମୁହିଁ ଧନ୍ୟ ।
ଧନ୍ୟତୋ କର୍ଣ୍ଣ, ମୁଖ, ନାସା । ଧନ୍ୟ ଜିହ୍ୱା ତୋର ଭାଷା ।
ଧନ୍ୟ ତୋ ମନ, ବୁଦ୍ଧି ଯେତେ । ପ୍ରଭୁଙ୍କ ଏତେ ଦୟା ତୋତେ ।
ସଂସାରେ ହରିଭକ୍ତି ସାର । ଧିକ ମୋ ନୃପତି ହେବାର ।
ଧିକ ଏ ଅନ୍ୟ କର୍ମ ଯେତେ । ଧନ୍ୟ ସଂସାରେ ହରି ଭକ୍ତେ ।
ଦେଖ ମୋହର ମୂଢ଼ପଣ । ସାଧୁଙ୍କୁ ଦେଲି ମୁଁ କଷଣ ।
ଏଥେଁ ଅପ୍ରାଧ ମୋର ଯେତେ । କେବେହେଁ ନ ଘେନିବ ଚିତ୍ତେ ।
ତୁମ୍ଭର ନାହିଁ ପରାପର । ମୋହର ଦୋଷ କ୍ଷମା କର ।"

( ଦାର୍ଢ଼୍ୟତା ଭକ୍ତି )

ଏହିପରି କ୍ଷମା ପ୍ରାର୍ଥନା କରି ରାଜା ହରିହର ସିଂହ ଦେବ ଘନକୃଷ୍ଣଙ୍କୁ ଅନେକ ଧନରତ୍ନ ପ୍ରଦାନ କଲେ ଏବଂ ତାଙ୍କୁ କାରାମୁକ୍ତ କରି ରାଜପ୍ରାସାଦକୁ ଫେରି ଆସିଲେ । ଘନକୃଷ୍ଣ ମଧ୍ୟ ହରିନାମ କୀର୍ତ୍ତନ କରି କରି ନିଜ କୁଟୀରକୁ ପ୍ରତ୍ୟାବର୍ତ୍ତନ କଲେ ।

ଘନକୃଷ୍ଣ ଦାସଙ୍କ ଜୀବନର ଆଉ ଏକ ଅଲୌକିକ ଅଧ୍ୟାୟ—

କାର୍ଯ୍ୟ-କାରଣ ନିୟମ ଅନୁସାରେ ମନୁଷ୍ୟ ଯେଉଁ କର୍ମ କରେ, ତା'ର ଫଳ ଭୋଗ କରିବାକୁ ସେ ବାଧ୍ୟ । ସେହି ଫଳ ସେ ହୁଏତ ଗୋଟିଏ ଜନ୍ମରେ ଭୋଗ କରିପାରେ କିମ୍ବା ଅନେକ ଜନ୍ମରେ ଭୋଗ କରିପାରେ; କିନ୍ତୁ କର୍ମଫଳ ଭୋଗରୁ ସେ କେବେ ହେଲେ ମୁକ୍ତ ହୋଇପାରେ ନାହିଁ । ପ୍ରାରବ୍ଧ କର୍ମର ଫଳ ଅବଶ୍ୟ ତାକୁ ଭୋଗ କରିବାକୁ ହେବ ।

ଘନକୃଷ୍ଣ ଦାସ ଜଗନ୍ନାଥ ମହାପ୍ରଭୁଙ୍କର ଜଣେ ପରମ ଭକ୍ତ ଭାବରେ ପ୍ରସିଦ୍ଧି ଅର୍ଜନ କରିଥିଲେ ମଧ୍ୟ ପ୍ରାରବ୍ଧ-କର୍ମ-ଫଳରୁ ମୁକ୍ତ ହୋଇ ନ ଥିଲେ । ତେଣୁ ବୟସ ବଢ଼ିବା ସଙ୍ଗେ ସଙ୍ଗେ ପ୍ରାରବ୍ଧ କର୍ମ ଅନୁସାରେ ସେ ଦାରୁଣ କୁଷ୍ଠରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । କୁଷ୍ଠରୋଗ ହେତୁ ସେ ସମାଜର ସମସ୍ତ ସୁବିଧା ସୁଯୋଗରୁ ବଞ୍ଚିତ ହେଲେ ଏବଂ ଦାରୁଣ ଯନ୍ତ୍ରଣା ସହ୍ୟକରି ଏକ-ପ୍ରକାର ଅବହେଳିତ ଜୀବନ ଅତିବାହିତ କଲେ । ଦିନକୁଦିନ ତାଙ୍କର ରୋଗଯନ୍ତ୍ରଣା ବର୍ଦ୍ଧିତ ହେଲା । ଶେଷରେ ସେ ଅସହାୟ ହୋଇ ସର୍ବରୋଗହର ଜଗନ୍ନାଥଙ୍କର ଆଶ୍ରୟ ଗ୍ରହଣ କଲେ ଏବଂ "ଆର୍ତ୍ତତ୍ରାଣ ଚଉତିଶା" ନାମକ ଗୋଟିଏ ଅତି ସୁନ୍ଦର, କରୁଣ ଓ ଭକ୍ତିରସପୂର୍ଣ୍ଣ କବିତା ରଚନା କଲେ । ସେହି ଚଉତିଶାଟିକୁ ଧରି ସେ ଶ୍ରୀମନ୍ଦିରର ଗରୁଡ଼ସ୍ତମ୍ଭ ନିକଟରେ ଉପସ୍ଥିତ ହେଲେ ଏବଂ

ନୟନରୁ ଅଶ୍ରୁ ନିର୍ଗତ କରି ଭକ୍ତି ଗଦ୍‌ ଗଦ୍‌ କଣ୍ଠରେ ତାହା ଗାନ କରିବାକୁ ଲାଗିଲେ—

"କୃପାସିନ୍ଧୁ ବଦନ    କର ଅବଲୋକନ
କେଉଁ କରମ ହୀନ ଜନ,
କାକୁସ୍ଥଭର ହୋଇ    କର ଯୋଡ଼ି ଜଣାଇ
ଗରୁଡ଼ସ୍ତମ୍ଭ ସନ୍ନିଧାନ,
ହେ ମହାପ୍ରଭୁ !
କୃପା-ସରିତ-ପତି ହୋଇ
କର୍ମହୀନ ଜନରେ ତହିଁ
କରୁଣା କଲ ନାହିଁ    କମାହେ ସବୁଠାହି
ଏହା ମୁଁ ବିଚାର ମଣଇ
ହେ ମହାପ୍ରଭୁ !

× × ×

ହୃଦୟେ ଅଛି ମୋର    ଏହୁ ଭବସାଗର
ତରିବ ତୁମ୍ଭ ମହିମାରୁ,
ହେଉଅଛି ସଂଶୟେ    ଯେଣୁ ମୋହ ବିଷୟେ
ଅକରୁଣା ମହିମା ମେରୁ,
ହେ ମହାପ୍ରଭୁ !
ହୋଇଲା କର୍ମ ମୋ ବଇରି
ହୃଦୟ ଦହଇ ମୋହରି
ହେତୁ କର୍ମର ତୁମ୍ଭେ    ତେଣୁ କରି ମୁଁ ଦମ୍ଭେ
ଗୁହାରି କଲି ଦଇତାରି
ହେ ମହାପ୍ରଭୁ !

(ଆର୍ତ୍ତତ୍ରାଣ ଚଉତିଶା)

ପ୍ରାର୍ଥନା ପରେ ହରିକୃଷ୍ଣ ନିଜ ଗୃହକୁ ଫେରିଆସିଲେ । ପ୍ରକୃତରେ ଜଗନ୍ନାଥଙ୍କ କୃପା ତାଙ୍କ ଉପରେ ବର୍ଷିତ ହେଲା । ସେ ଧୀରେ ଧୀରେ ରୋଗମୁକ୍ତ ହୋଇଗଲେ ।

ଜଗନ୍ନାଥଙ୍କର ମହିମା ଯେପରି ଅଲୌକିକ, ସେହିପରି ଅବର୍ଣ୍ଣନୀୟ !! ତାଙ୍କର ମହିମା ଗାନ କରିବା ପାଇଁ ମନୁଷ୍ୟ ତ ଛାର, ସହସ୍ରମୁଖ ଅନନ୍ତ ମଧ୍ୟ ଅକ୍ଷମ !



# ଚିମଟି ମହାପ୍ରସାଦ ଓ ଶ୍ରୀଜଗନ୍ନାଥ

"ନମଇଁ ନୃସିଂହ ଚରଣ । ଅନାଦି ପରମ କାରଣ ।
ଲୀଳାବିଧୃତ କଳେବର । ଦେବ ମାନବେ ଅଗୋଚର ।
ମାୟା ସଂସାରେ ଯାର ଲୀଳା । ଯା ନାମ ଭବଜଳ ଭେଳା ।
କରୁଣା କଟାକ୍ଷ ପ୍ରକାଶେ । ଭକତଜନ ଦୁଃଖ ନାଶେ ।"

(ଶ୍ରୀମଦ୍ଭାଗବତ : ଏକାଦଶସ୍କନ୍ଧ)

ଲୀଳାପ୍ରିୟ ଜଗନ୍ନାଥଙ୍କର ଲୀଳା ଯେପରି ମନୋରମ, ସେହିପରି ହୃଦୟସ୍ପର୍ଶୀ । ଭକ୍ତର ମାନ ରକ୍ଷାପାଇଁ ଓ ଅହଙ୍କାରୀର ଗର୍ବ ମୋଚନ ପାଇଁ ସେ ବିଭିନ୍ନ ପ୍ରକାର ଲୀଳା ପ୍ରକଟ କରି ସଂସାରର ମହାର୍ଘ ଉପକାର ସାଧନ କରନ୍ତି । ଲୀଳା ବିଗ୍ରହ ଧାରଣ କରି ସେ ଯେଉଁ ଲୀଳା ପ୍ରକାଶ କରନ୍ତି, ତାହା ଦେବତାମାନେ ମଧ୍ୟ ବୁଝିବାକୁ ଅକ୍ଷମ । ସ୍ଥୂଳ ମନୁଷ୍ୟ ତାଙ୍କର ଅଦ୍ଭୁତ ଲୀଳା ବୁଝିବ କିପରି ? ଯୁଗେ ଯୁଗେ ସେ ନିଜର ଦିବ୍ୟ ଲୀଳାଦ୍ୱାରା ଭକ୍ତମାନଙ୍କୁ ଆକୃଷ୍ଟ କରି ନିଜ କୋଳକୁ ଟାଣି ଆଣନ୍ତି । ଭକ୍ତ ତାଙ୍କର ଦିବ୍ୟ ଲୀଳ ଦର୍ଶନ କରି ଆନନ୍ଦରେ ତନ୍ମୟ ହୋଇଯାଏ ଏବଂ ନିଜର ସୀମିତ ସତ୍ତା ସେହି ଲୀଳା ବିଗ୍ରହଙ୍କର ଅନନ୍ତ ସତ୍ତାରେ ବିଲୁପ୍ତ କରି ଭବ-ସଂସାରର ସମସ୍ତ ଦୁଃଖ ଯନ୍ତ୍ରଣାରୁ ମୁକ୍ତ ହୋଇଯାଏ ।

ତିନଛି ମହାପାତ୍ର ଥିଲେ ସେତ୍ରିପଭି ଜଗନ୍ନାଥ ମହାପ୍ରଭୁଙ୍କର ଜଣେ ଏକନିଷ୍ଠତମ ଭକ୍ତ । ସେ ଜଗନ୍ନାଥଙ୍କର ସେବକ ହିସାବରେ ଶ୍ରୀମନ୍ଦିରରେ ନିଯୁକ୍ତ ପାଇଥିଲେ । ସବୁ ପ୍ରକାର ଶାସ୍ତ୍ର ଅଧ୍ୟୟନକରି ପାଣ୍ଡିତ୍ୟ ଅର୍ଜନ କରିଥିଲେ ମଧ ତାଙ୍କ ମଧରେ ଲେଶମାତ୍ର ଗର୍ବ କିମ୍ବା ଅହଙ୍କାର ନ ଥିଲା । ପ୍ରତ୍ୟହ ଜଗନ୍ନାଥଙ୍କର ସେବା ଅର୍ଚ୍ଚନା କରି ଓ ଦୁଃଖୀ ଦରିଦ୍ରମାନଙ୍କୁ ଉତ୍ତମ ଭୋଜନରେ ସନ୍ତୁଷ୍ଟ କରି ସେ ନିଜର ଜୀବନ ଅତିବାହିତ କରୁଥିଲେ । ବିଶେଷ କରି ଜଗନ୍ନାଥଙ୍କ ପ୍ରତି ତାଙ୍କ ହୃଦୟରେ ଅସୀମ ଭକ୍ତି ଥିଲା । ଜଗନ୍ନାଥଙ୍କର ସେବାକରି ସେ ପରମ ତୃପ୍ତି ଅନୁଭବ କରୁଥିଲେ । ପ୍ରଭାତରେ ଶଯ୍ୟାତ୍ୟାଗଠାରୁ ଆରମ୍ଭକରି ରାତ୍ରିରେ ଶଯ୍ୟା ଗ୍ରହଣ ପର୍ଯ୍ୟନ୍ତ ସେ କିପରି ଜଗନ୍ନାଥ ମହାପ୍ରଭୁଙ୍କର ବିଭିନ୍ନ ସେବାରେ ନିଯୁକ୍ତ ରହୁଥିଲେ, ଭକ୍ତକବି ରାମଦାସ ତାହା ଅତି ମନୋଜ୍ଞ ଭାଷାରେ ବର୍ଣ୍ଣନା କରିଛନ୍ତି—

"ପାହାନ୍ତ ଅବକାଶଠାରୁ । ପ୍ରଭୁଙ୍କ ପହଡ଼ ସେବାରୁ ।
ଏଥି ମଧ୍ୟରେ ସେବା ଯେତେ । କରୁ ସେ ଥାଇ ନିତ୍ୟେ ନିତ୍ୟେ ।
କଷିଟି କର୍ଣ୍ଣାଞ୍ଚଳ ଚୂଳ । ହାତ କେୟୂର ଧଣ୍ଡାମାଳ ।
ହୃଦ ପଦ୍ମରେ ପଦ୍ମହାର । ଘୋର ବାହୁଟି ଝଞ୍ଜିବାର ।
ନାନା କୁସୁମେ ହାର ଯେତେ । ତୁଳସୀ ଧଣ୍ଡାର ସହିତେ ।
ଯେ ଅଷ୍ଟରତ୍ନ ଅଳଙ୍କାର । ଭୂଷଣ ପ୍ରଭୁମାନଙ୍କର ।
ଯେତେ ବେଳର ସେବା ଯେତେ । ସବୁ ସେ କରୁଥାଇ ହସ୍ତେ ।
ଶ୍ରୀମୁଖ ସିଂହାର କରିବା । ଯେ ବସ୍ତ୍ରମାନ ପିନ୍ଧାଇବା ।
ଗନ୍ଧ ଚନ୍ଦନ ଯେ କସ୍ତୁରୀ । ତିଳକ ସେବା ଆଦି କରି ।
ଧୂପ ଆଳତି କରିବାର । କର୍ପୂର ଦୀପ ଜାଳିବାର ।
ତାହାର ବିନା ଅନ୍ୟ ନରେ । କ୍ଷମ ନୁହନ୍ତି କରିବାରେ ।"

(ଦାର୍ଢ୍ୟତା ଭକ୍ତି ରସାମୃତ)

ତିଳକ୍କ ମହାପାତ୍ର ଯେ ଜଣେ ସାଧାରଣ ସେବକ ହିସାବରେ ଜଗନ୍ନାଥଙ୍କର ସେବା କରୁଥିଲେ ତାହା ନୁହେଁ; ବରଂ ଜଣେ ଏକନିଷ୍ଠ ଭକ୍ତ ହିସାବରେ ଗଭୀର ଶ୍ରଦ୍ଧାର ସହିତ ସେ ଜଗନ୍ନାଥଙ୍କ ସେବା କାର୍ଯ୍ୟରେ ମନୋନିବେଶ କରୁଥିଲେ । ସେ ନିଜର ସର୍ବସ୍ୱ ଜଗନ୍ନାଥ ମହାପ୍ରଭୁଙ୍କର ପାଦପଦ୍ମରେ ଅର୍ପଣ କରି ଦେଇଥିଲେ ।

ସେତେବେଳେ ପୁରୀର ଶାସନ କରୁଥିଲେ ଗଜପତି ମହାରାଜା ଶ୍ରୀ ପ୍ରତାପରୁଦ୍ର ଦେବ । ଦିନେ ସେ ଜଗନ୍ନାଥଙ୍କ ଦର୍ଶନ କରିବା ପାଇଁ ଶ୍ରୀମନ୍ଦିରକୁ ଗମନ କଲେ । ଅବିଳମ୍ବରେ ରାଜାଙ୍କର ଆଗମନ-ବାର୍ତ୍ତା ମନ୍ଦିର ସାରା ବ୍ୟାପିଗଲା । ସେବକମାନେ ନିଜ ନିଜର କାମରେ ଲାଗି ପଡ଼ିଲେ । ସେତେବେଳକୁ ତିଳକ୍କ ମହାପାତ୍ର ଜଗନ୍ନାଥଙ୍କର ବେଶ କରୁଥିଲେ; ମାତ୍ର ବେଶ ସଂପୂର୍ଣ୍ଣ ହୋଇ ନ ଥିଲା । ଜଗନ୍ନାଥଙ୍କ ମସ୍ତକରେ ଫୁଲମାଳ ପିନ୍ଧାଇ ବେଶ ସଂପୂର୍ଣ୍ଣ କରିବା କଥା; ମାତ୍ର ସେ ପର୍ଯ୍ୟନ୍ତ ମନ୍ଦିରକୁ ଫୁଲମାଳ ଆସି ନ ଥିଲା । ଠାକୁର ରାଜା ମନ୍ଦିରକୁ ବିଜେକଲେ ତାଙ୍କୁ ଜଗନ୍ନାଥଙ୍କ ମସ୍ତକରୁ ଫୁଲମାଳ ଆଣି ପ୍ରଦାନ କରିବାର ବିଧି ବହୁଦିନରୁ ଚଳି ଆସୁଛି । ଆଜି ତାହାର ଅନ୍ୟଥା ହେବ କିପରି ? ଏହିକଥା ଚିନ୍ତା-କରି ତିଳକ୍କ ମହାପାତ୍ର ବଡ଼ ଅସୁବିଧାରେ ପଡ଼ିଗଲେ । ରାଜାଙ୍କୁ ଫୁଲମାଳ ଦେଇ ସନ୍ତୁଷ୍ଟ ନ କଲେ ତାଙ୍କୁ ଯେ କଠୋର ଦଣ୍ଡ ଭୋଗ କରିବାକୁ ପଡ଼ିବ, ଏହା ଚିନ୍ତାକରି ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ଅନ୍ୟ କିଛି ଉପାୟ ନପାଇ ସଙ୍ଗେ ସଙ୍ଗେ ସେ ନିଜ ମସ୍ତକରୁ ଫୁଲମାଳ ଆଣି ଜଗନ୍ନାଥଙ୍କ ମସ୍ତକରେ ପିନ୍ଧାଇ ଦେଲେ ।

କିଛି ସମୟ ପରେ ମହାରାଜା ପ୍ରତାପରୁଦ୍ର ଦେବ ରତ୍ନ-ସିଂହାସନ ନିକଟରେ ଉପସ୍ଥିତ ହେଲେ । ସେଠାରେ ସେ ଯଥା-

ସ୍ତୁତି ପୂଜା ଅର୍ଚ୍ଚନା କଲେ ଏବଂ ଜଗନ୍ନାଥଙ୍କୁ ଭେଟି ଅର୍ପଣ କଲେ । ତାହାପରେ ସେ ପ୍ରସାଦମାଳା ପାଇଁ ହାତ ବଢ଼ାଇବା ମାତ୍ରେ ତିଳକ୍ଷ ମହାପାତ୍ର ଜଗନ୍ନାଥଙ୍କ ମସ୍ତକରୁ ଫୁଲମାଳ ଆଣି ତାଙ୍କ ହସ୍ତରେ ପ୍ରଦାନ କଲେ । ରାଜା ଆନନ୍ଦରେ ସହିତ ତାହା ଗ୍ରହଣ କରି ରାଜ-ପ୍ରାସାଦକୁ ଫେରି ଆସିଲେ ।

ରାଜପ୍ରାସାଦକୁ ଫେରି ମହାରାଜା ଦେଖିଲେ, ସେ ଆଣିଥିବା ପ୍ରସାଦମାଳା ଭିତରେ କେତେଗୁଡ଼ିଏ ଦୀର୍ଘ କେଶ ରହିଅଛି । ତାହା ଦେଖି ପ୍ରଥମେ ସେ ଆଶ୍ଚର୍ଯ୍ୟ ହୋଇଗଲେ; ମାତ୍ର ପରେ ଚିନ୍ତାକଲେ, "ବୋଧହୁଏ ମୁଁ ମନ୍ଦିରକୁ ଗଲାବେଳକୁ ଜଗନ୍ନାଥଙ୍କ ମସ୍ତକରେ ଫୁଲମାଳ ନ ଥିଲା । ମୋତେ ପ୍ରସାଦମାଳା ଦେବାପାଇଁ ତିଳକ୍ଷ ମହାପାତ୍ର ନିଶ୍ଚୟ ନିଜ ମସ୍ତକରୁ ଫୁଲମାଳ ଆଣି ଜଗନ୍ନାଥଙ୍କ ମସ୍ତକରେ ସ୍ଥାପନ କରିଥିଲା । ତାହା ନ ହେଲେ କି ପ୍ରସାଦମାଳା-ଭିତରୁ କେଶ ବାହାରନ୍ତା ?" ଏପରି ନିଶ୍ଚୟକରି ପ୍ରତାପରୁଦ୍ରଦେବ ଅତ୍ୟନ୍ତ କ୍ରୁଦ୍ଧ ହୋଇ ପଡ଼ିଲେ ଏବଂ ଦୂତ ପ୍ରେରଣ କରି ତିଳକ୍ଷ ମହାପାତ୍ରଙ୍କୁ ଡକାଇ ଆଣିଲେ ।

ତିଳକ୍ଷ ମହାପାତ୍ର ଉପସ୍ଥିତ ହେବାମାତ୍ରେ ମହାରାଜା ପ୍ରତାପରୁଦ୍ର ଦେବ ଧମକପୂର୍ଣ୍ଣ ବାକ୍ୟରେ କହିଲେ —

"× × ଶୁଣ ମହାପାତ୍ର । ଆମ୍ଭେ ଦେଖିଲୁ ବିପରୀତ ।
ପ୍ରଭୁଙ୍କ ମଉଳରେ ବାଳ । ଉଠିବା ହେଲା କେତେ କାଳ ।
ବେଗେ ତୁ କହ ମୋର ପାଶ । ଯେବେ ଜୀବନେ ତୋର ଆଶ ।
ନୋହିଲେ ମରିବୁ ଅବଶ୍ୟ । ଦେଖ ପ୍ରସାଦ ଫୁଲେ କେଶ ।

ରାଜାଙ୍କ ମୁଖରୁ ଏପରି କଠୋର ବାକ୍ୟ ଶ୍ରବଣକରି ତିଳକ୍ଷ ମହାପାତ୍ରଙ୍କ ହୃଦୟ ଭୟରେ ଥରିବାକୁ ଲାଗିଲା । ସେଉଁ ଭୁଲ୍ କରି

ସେ ଜଗନ୍ନାଥଙ୍କ ନିକଟରେ ନିଜକୁ ଅପରାଧୀ ବୋଲି ମନେ କରୁଥିଲେ, ସେହି ଭୁଲ ରାଜାଙ୍କ ନିକଟରେ ଧରା ପଡ଼ିଯିବାରୁ ସେଥିପାଇଁ ସେ ବଡ଼ ବିବ୍ରତ ହେଲେ, ମାତ୍ର ଆସନ୍ନ ବିପଦରୁ ରକ୍ଷା ପାଇବାପାଇଁ ସେ ତରତରରେ କହି ପକାଇଲେ—

"× × ଶୁଣ ହେ ନରେଶ । ହେଲାଣି ପ୍ରଭୁ ମୁଣ୍ଡେ କେଶ ।
ଆଜ ଯାଏକ ଦଣ୍ଡଧର । ତୁମ୍ଭଙ୍କୁ ନୋହିବୁ ଗୋଚର ।"

ଭିକାରି ମହାପାତ୍ରଙ୍କ ମୁଖରୁ ଏପରି ଅସମ୍ଭବ କଥା ଶୁଣି ରାଜା କହିଲେ—

"× × × । କାଲି ତୁଟିବ ତୁମ୍ଭ କଥା ।
ଯେବେ ପ୍ରଭୁଙ୍କ ଶିରେ କେଶ । ଦେଖାଇ ଦେବୁଟି ଅବଶ୍ୟ ।
ତେବେଟି ତୁମ୍ଭର କୁଶଳ । ନୋହିଲେ ରାଜ୍ୟ ଛାଡ଼ି ଚଳ"

ରାଜାଙ୍କ ମୁଖରୁ ଏପରି କଥା ଶୁଣି ଭିକାରି ମହାପାତ୍ର କ'ଣ କରିବେ କିଛି ଠିକ୍ କରିପାରିଲେ ନାହିଁ । ଘୂରିଗଲା ମସ୍ତିଷ୍କ ନେଇ ସେ ଶ୍ରୀମନ୍ଦିରକୁ ଫେରି ଆସିଲେ । ମଳିନ ମୁଖ ଓ ଅବଶ ହାତରେ ସେ ଜଗନ୍ନାଥଙ୍କର ସେବା ଅର୍ଚ୍ଚନା ଏବଂ ଆଳତି ବନ୍ଦାପନା କଲେ । ସେ ଦିନ ସେ ଆଉ ଗୃହକୁ ନ ଫେରି ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ମନ୍ଦିରରେ ରହିଲେ । ଯଥା ନିୟମରେ ଜଗନ୍ନାଥଙ୍କର ବଡ଼ସିଂହାର ବେଶ ହେଲା ଓ ଭୋଗ ଲାଗିଲା । ତାହା ପରେ ସମସ୍ତେ ନିଜ ନିଜ ଗୃହକୁ ଫେରି ଆସିବା କଥା; ମାତ୍ର ଭିକାରି ମହାପାତ୍ର ଗୃହକୁ ନ ଫେରି ଜଗନ୍ନାଥଙ୍କ ନିକଟରେ ଛିଡ଼ାହୋଇ ରହିଲେ । ତାଙ୍କ ଆଖିରୁ ଧାର ଧାର ହୋଇ ଲୁହର ଝରଣା ବହି ଗଲାଥିଲା । ଜଗନ୍ନାଥଙ୍କୁ ପ୍ରାର୍ଥନାକରି ବାଷ୍ପରୁଦ୍ଧ କଣ୍ଠରେ ସେ କହିଲେ—

"× × ଆହେ ମହାବାହୁ । ତୁମ୍ଭରେ କି କହିବି ଆଉ ।
ଇତର ଲୋକେ ବଡ଼ପଣ । ଦେଖନ୍ତି ପ୍ରଭୁ ନାରାୟଣ ।

× × ×

ଯେବଣ ପାଦପଦ୍ମ ତଳେ । ବ୍ରହ୍ମା ଇନ୍ଦ୍ରାଦି ଶିର ଲୁଟଳେ ।
ଯେ ପାଦ ପଙ୍କଜର ମୂଳେ । କମଳା ସେବେ ନିରନ୍ତରେ ।
ଯେବଣ ପାଦପଦ୍ମ ବାରି । ଶଙ୍କର ମଉଳିରେ ଧରି ।

× × ×

ସେ ପାଦପଦ୍ମ ସେବାକରି । ମୋ ଛାର ନରଦେହ ଧରି ।
କୋଟିଏ ଜନ୍ମରୁ ନିଉନ । ମୁଁ ନୋହେ ତାହାଙ୍କ ଭଜନ ।
ଯେଣୁ ତୁ ହେଲୁ ଭବଗ୍ରାହୀ । ତେଣୁ ମୁଁ ମଉଗଙ୍କ ବନ୍ଦୀ ।
ପ୍ରଭୁଙ୍କୁ ଚିହ୍ନି ନ ପାରିଲି । ମୁଁ ମୂଢ଼ ମନ୍ଦ କର୍ମ କଲି ।
ମୋ ମୁଣ୍ଡ ଛଡ଼ାଫୁଲ ନେଇ । ତୋ ମୁଣ୍ଡେ ଥୋଇଲି ଗୋସାଇଁ ।
ଏହା କହୁଛି ମୋର ତୁଣ୍ଡ । ଚନ୍ଦେ ବିନାଶ ମୋର ମୁଣ୍ଡ ।
ରାଜାର ଦଣ୍ଡଯାଏ ନୋହି । ଏ ପାପୀ ଶରୀର ନ ଥାଉ ।
ଅଧିକ କି କହିବି ତୋତେ । ତୁ ଯେ ଭକତ ଜନ ହିତେ ।
ଅନେକ ପାଇଛୁ କଷଣ । ଏହା ମୁଁ ଶୁଣିଛି ଶ୍ରବଣ ।
ଅଦ୍ୟାପି ଶ୍ରୀବତ୍ସ ପଦର । ବହିଛୁ ହୃଦ-ପଦ୍ମେ ତୋର ।
ତାହା ମୁଁ ନୟନେ ଦେଖୁଛି । ତେଣୁ ମୋ ଭୟନାହିଁ କିଛି ।
ତୁ ନାଥ ପରମ ଦୟାଳୁ । ଭୃତ୍ୟ ଦଣ୍ଡକୁ ନାହିଁ ଛାଡୁ ।
ଏଣୁ ମୁଁ କହୁଅଛି ତୋତେ । କହୁଛି ନୃପତି ଅଗ୍ରତେ ।
କହି ଅଇଲି ଭବଗ୍ରାହୀ । ତାହାତ ଜାଣିଥିବୁ ତୁହି ।
ରାଜ ପାହିଲେ ନରନାଥେ । ଧରାଇ ଦେନି ଯିବେ ମୋତେ ।
ଅନେକ ଦଣ୍ଡ ସେ କରିବ । ସେ ଦଣ୍ଡ କେ ସହି ପାରିବ ।
ଏଣୁ ତା ଦଣ୍ଡକୁ ନ ଥିବ । ଗରଳ ଖାଇଣ ମରିବ ।
ଏ କଥା ଅଟଇ ପ୍ରମାଣ । ତୁମ୍ଭରେ କଲି ନିବେଦନ ।"

(ଦାର୍ଢ୍ୟତା ଭକ୍ତି)

ଜଗନ୍ନାଥଙ୍କ ପାଦପଦ୍ମରେ ଏହିପରି କାତର ନିବେଦନ କରି ଓଳଙ୍ଗ ମହାପାତ୍ର ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ସେଦିନ ରାତିରେ ସେ କିଛି ଭୋଜନ କଲେ ନାହିଁ; ମାତ୍ର ଆତ୍ମହତ୍ୟା କରିବାକୁ ମନସ୍ଥ କରି ଉତ୍କଟ ବିଷ ଆଣି ନିଜ ପାଖରେ ରଖିଲେ । ତାହାପରେ ସେ ଚକ୍ଷୁ ମୁଦ୍ରିତ କରି ଜଗନ୍ନାଥଙ୍କୁ ଧ୍ୟାନ କରିବାମାତ୍ରେ ତାଙ୍କର ଶରୀର ଅବଶ ହୋଇ ପଡ଼ିଲା ଏବଂ ସେ ନିଦ୍ରାଚ୍ଛନ୍ନ ହୋଇ ଭୂମିରେ ପତିତ ହେଲେ । ତାହା ଥିଲା ବୋଧହୁଏ ଜଗନ୍ନାଥଙ୍କ ମାୟାଶକ୍ତିର ପ୍ରଭାବ । ନିଜର ମାୟାଶକ୍ତିରେ ଭକ୍ତକୁ ବଶୀଭୂତ କରି ମହାୟାଙ୍ଗୀ ଜଗନ୍ନାଥ ଭକ୍ତ ସମ୍ମୁଖରେ ଉପସ୍ଥିତ ହେଲେ ଓ ସ୍ୱପ୍ନରେ ଆବିର୍ଭୂତ ହୋଇ କହିଲେ—

"× × ଶୁଣରେ ଭକତ । ତୁ କମ୍ପା ଚିନ୍ତାକରୁ ଚିତ୍ତ ।
ମୋ ପରି ପ୍ରଭୁ ସେବାକରି । ଆନ ଗୁରୁକୁ କମ୍ପା ଡରି ।
ମୁଁ ଥିଲେ ନୀଳାଚଳେ ବସି । କି କରିପାରେ ରାଜା ଆସି ।
କୋଟିଏ ନୃପତି ଅଇଲେ । କି କରିପାରେ ତୋତେ ଭଲେ ।
ଆବର କହୁଅଛି ତୋତେ । ତୁ ଡରୁ ଯହିଁର ନିମନ୍ତେ ।
ମୁଁ ତ ତେମନ୍ତ ଲଣ୍ଡା ନୋହେ । ତୋ ମନେ କମ୍ପା କରୁ ଭୟେ ।
କେଶ କି ନାହିଁ ମୋର ମାଥେ । ଦିଶଇ ନାହିଁ କିନା ତୋତେ
ଏବେ ନଡ଼ର ମନେ କିଛି । ନିଶ୍ଚେ ମୋ ମୁଣ୍ଡେ କେଶ ଅଛି
କାଲି ତୁ ପ୍ରତ୍ୟକ୍ଷେ ଦେଖିବୁ । ରାଜାକୁ ଦେଖାଇଣ ଦେବୁ ।
(ଦାର୍ଢ୍ୟତା ଭକ୍ତି)

ହଠାତ୍ ଓଳଙ୍ଗ ମହାପାତ୍ରଙ୍କର ନିଦ୍ରାଭଙ୍ଗ ହେଲା । ସେ ଘରଆଡ଼କୁ ଅନାଇ ଦେଖିଲେ, କିଏ କେଉଁଠି ନାହିଁ; ମାତ୍ର ତାଙ୍କ ହୃଦୟରେ ସେ ଏକପ୍ରକାର ସ୍ୱର୍ଗୀୟ ଆନନ୍ଦ ଅନୁଭବ କରିପାରିଲେ ।

ତେଣୁ ସ୍ୱପ୍ନ କଥାକୁ ବିଶ୍ୱାସକରି ବଳିର ଅବଶିଷ୍ଟ ଅଂଶ ସେ ପ୍ରାର୍ଥନାରେ ଅତିବାହିତ କଲେ ।

ତହିଁ ପରଦିନ ପ୍ରଭାତରେ ନିତ୍ୟକର୍ମ ସମାପ୍ତକରି ଗଜପତି ମହାରାଜା ପ୍ରତାପରୁଦ୍ରଦେବ ରାଜପାରିଷଦମାନଙ୍କୁ ସଙ୍ଗରେ ଧରି ଶ୍ରୀମନ୍ଦିରକୁ ଗମନ କଲେ । ସେ ମନ୍ଦିରର ସିଂହଦ୍ୱାରଠାରେ ଉପସ୍ଥିତ ହେଲା ମାତ୍ରେ ତିଳକ୍ଷି ମହାପାତ୍ର ହସ ହସ ମୁହଁରେ ତାଙ୍କୁ ମନ୍ଦିରର ଅଭ୍ୟନ୍ତରକୁ ପାଛୋଟି ନେଲେ । ରାଜା ମନ୍ଦିରରେ ପ୍ରବେଶକରି ରତ୍ନସିଂହାସନ ନିକଟରେ ଉପସ୍ଥିତ ହେଲେ ଏବଂ ଜଗନ୍ନାଥଙ୍କୁ ପ୍ରଣାମକରି ଯେତେବେଳେ ସିଂହାସନ ଉପରକୁ ଦୃଷ୍ଟି ନିକ୍ଷେପ କଲେ, ସେତେବେଳେ ସେ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇପଡ଼ିଲେ । ସେ ଦେଖିଲେ, ଜଗନ୍ନାଥଙ୍କ ମସ୍ତକରୁ କଳା ଚକମକ ଲମ୍ବା କେଶଗୁଚ୍ଛ କଟିଦେଶ ପର୍ଯ୍ୟନ୍ତ ଲମ୍ବି ଆସିଛି । ଏପରି ଅଦ୍ଭୁତ ଦୃଶ୍ୟ ଦେଖି ପ୍ରଥମେ ସେ ଆଶ୍ଚର୍ଯ୍ୟରେ ହତବାକ୍ ହୋଇପଡିଲେ ମଧ୍ୟ ପରେ ସେ ଏହାକୁ ତିଳକ୍ଷି ମହାପାତ୍ରଙ୍କର ଏକ ଚାଲବାଜି ବୋଲି ମନେକଲେ । ସେ ଭାବିଲେ, ବୋଧହୁଏ ତିଳକ୍ଷି ମହାପାତ୍ର ଜଉ ବା ମହମ ଲଗାଇ ଜଗନ୍ନାଥଙ୍କ ମସ୍ତକରେ କୃତ୍ରିମ କେଶ ଖଞ୍ଜି ଦେଇଛି । ଏହା ଭାବି ସେ ଜଗନ୍ନାଥଙ୍କ ମସ୍ତକରୁ କେରାଏ କେଶ ଝିଙ୍କି ଆଣିଲେ; ମାତ୍ର ଆଶ୍ଚର୍ଯ୍ୟର କଥା କେଶ ଝିଙ୍କିବା ମାତ୍ରେ ଜଗନ୍ନାଥଙ୍କ ମସ୍ତକରୁ ଧାର ଧାର ହୋଇ ରୁଧିର ନିର୍ଗତ ହେଲା । ରାଜା ଏହା ଦେଖି ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି କାତର ହୋଇ ପଡ଼ିଲେ । ତିଳକ୍ଷି ମହାପାତ୍ର ଯେ ଜଗନ୍ନାଥ ମହାପ୍ରଭୁଙ୍କର ଜଣେ ପରମ ଭକ୍ତ ଏହା ବୁଝିବାକୁ ତାଙ୍କୁ ବେଶି ସମୟ ଲାଗିଲା ନାହିଁ । ସେ ଭକ୍ତ ପାଦତଳେ ପ୍ରଣାମକରି କହିଲେ—

"ହେ ଦ୍ୱିଜବର ମୋତେ ରଖ । ମୁଁ ମୂଢ଼ ବଡ଼ଇ ମୂରୁଖ ।
ପ୍ରଭୁର ଅପରାଧୀ ହେଲି । ଏବେ ସାକ୍ଷାତେ ନାଶଗଲି ।
ପ୍ରଭୁଙ୍କ ଦୟା ଏତେ ତୋତେ । ବୋଲି ମୁଁ ଜାଣିବି କେମନ୍ତେ ।
ଏବେ ଜାଣିଲି ଭଗବାନ । ଭକତ ନୁହେଁ ଭିନ୍ନାଭିନ୍ନ ।
ଭକତ ଅଭିମାନ ଯେତେ । ପ୍ରଭୁଙ୍କୁ ଲାଗଇ ସାକ୍ଷାତେ ।
ମୁଁ ମୂଢ଼ ମନ୍ଦ କୃତ୍ୟ କଲି । ଭକତେ ଅପରାଧୀ ହେଲି ।
ଡେଇଁଲି ଜଳନ୍ତା ହୁତାଶ । ଖାଇଲି କାଳକୂଟ ବିଷ ।
କେମନ୍ତେ ହେବି ଏଥୁ ପାର । ହେ ବିପ୍ରବର ରକ୍ଷାକର ।
(ଦାର୍ଢ୍ୟତା ଭକ୍ତି)

ତଳଛ ମହାପାତ୍ର ରାଜାଙ୍କୁ ସାନ୍ତ୍ୱନା ଦେଇ କହିଲେ—

"ତୁମ୍ଭର ନାହିଁ କିଛି ଦୋଷ । ସେ ହରି ମହିମା ବିଶେଷ ।
ମୋ ଅପରାଧ କ୍ଷମାକରି । ଦୟା ଯେ କଲେ ଦାରୁହରି ।"

ରାଜା ଏବଂ ତଳଛ ମହାପାତ୍ରଙ୍କ ମଧ୍ୟରେ ଏହିପରି କଥୋପକଥନ ସମୟରେ ଶ୍ରୀମନ୍ଦିରର ଅଭ୍ୟନ୍ତର ଭକ୍ତ ଓ ଭଗବାନଙ୍କର ଜୟଧ୍ୱନିରେ ମୁଖରିତ ହୋଇ ଉଠିଲା । ରାଜା ରାଜପ୍ରାସାଦକୁ ଫେରିବା ପୂର୍ବରୁ ଜଗନ୍ନାଥଙ୍କୁ ଚାହିଁ ଦେଖିଲେ, ତାଙ୍କ ମସ୍ତକରେ ପୂର୍ବର ସେହି କେଶଗୁଚ୍ଛ ଆଉ ନାହିଁ । ସଙ୍ଗେ ସଙ୍ଗେ ତାଙ୍କ ଆଖିରୁ ଆନନ୍ଦର ଅଶ୍ରୁଧାର ଝରିବାକୁ ଲାଗିଲା । ସେ ଭଗବାନଙ୍କର ମହିମା ସ୍ମରଣ କରିକରି ରାଜପ୍ରାସାଦକୁ ଫେରି ଆସିଲେ । ତଳଛ ମହାପାତ୍ର କିନ୍ତୁ ରତ୍ନସିଂହାସନ ଆଗରେ ନିଶ୍ଚଳ ଶରୀରରେ ଛିଡ଼ା ହୋଇଥିଲେ ଏକ ଦୃଢ଼ ସ୍ତମ୍ଭପରି । ତାଙ୍କର ଚକ୍ଷୁଦ୍ୱୟ ନିଶ୍ଚଳ ହୋଇ ଜଗନ୍ନାଥଙ୍କର ସୁନ୍ଦର ଚକାଡ଼ୋଳାଦ୍ୱୟରେ ନିବଦ୍ଧ ଥିଲା ।

ବେଳେବେଳେ ତାଙ୍କର ଚକ୍ଷୁଦ୍ୱୟରୁ ଦୁଇଟି ସ୍ରୋତସ୍ୱିନୀ ବହି ଗଣ୍ଡମଣ୍ଡଳକୁ ଆର୍ଦ୍ର କରୁଥିଲା । ତାଙ୍କୁ ଦେଖିଲେ ଜଣା ପଡ଼ୁଥିଲା, ସତେ ଯେପରି ସେ ଏକ ଅଜ୍ଞାତ ରାଜ୍ୟରେ ବିଚରଣ କରି ଦିବ୍ୟାନନ୍ଦ ଉପଭୋଗ କରୁଛନ୍ତି । ବାସ୍ତବରେ ଭକ୍ତର ସେହି ଭାବାବେଶ କେବଳ ଭଗବାନ ହିଁ ବୁଝିବାକୁ ସମର୍ଥ ।

ଜଗନ୍ନାଥ ! ତୁମେ ଭକ୍ତର ମାନରକ୍ଷା ପାଇଁ ଯେଉଁ ସବୁ ଅଦ୍ଭୁତ ଲୀଳା ପ୍ରଦର୍ଶନ କରିଛ, ତାହା ସାଧାରଣ ମାନବର ଅବୋଧ, ତେଣୁ ମୋ'ପରି ଜଣେ ନଗଣ୍ୟ ମନୁଷ୍ୟ ତାହା ବର୍ଣ୍ଣନା କରିବାକୁ କିପରି ସମର୍ଥ ହେବ ? ?



# ମଣିଦାସ ଓ ଶ୍ରୀଜଗନ୍ନାଥ

"ଯେ ଦାରଗାର—ପୁତ୍ରାପ୍ତାନ୍
ପ୍ରାଣାନ୍ ବିତ୍ତମିମଂ ପରମ୍ ।
ହିତ୍ୱା ମାଂ ଶରଣଂ ଯାତାଃ
କଥଂ ତାଂ ସ୍ତ୍ୟକ୍ତୁମୁତ୍-ସହେ ।"
(ଶ୍ରୀମଦ୍ଭାଗବତ, ୧ । ୪ । ୬୫)

"ଯେଉଁ ଭକ୍ତ ସ୍ତ୍ରୀ, ଘର, ପୁତ୍ର, ପରିବାର, ପ୍ରାଣ, ଧନ, ଇହଲୋକ ଏବଂ ପରଲୋକ—ସବୁ ପରିତ୍ୟାଗ କରି ମୋର ଆଶ୍ରୟ ନିଏ, ତାହାକୁ ଭଲା ମୁଁ କପରି ତ୍ୟାଗ କରିପାରିବି ?"

ଭକ୍ତବତ୍ସଳ ଭଗବାନ ଭକ୍ତାଧୀନ ଓ ଭକ୍ତାନୁଗ୍ରାହକ । ସୁନିର୍ମଳ ଭକ୍ତି ତାଙ୍କୁ ଯେପରି ବଶ କରିପାରେ, ଯୋଗ, ଜ୍ଞାନ, କର୍ମ ସେପରି ବଶ କରିପାରେନା । ଯେଉଁ ବ୍ୟକ୍ତି ସ୍ତ୍ରୀ, ଘର, ପୁ , ପରିବାର, ପ୍ରାଣ, ଧନ, ଇହଲୋକ, ପରଲୋକ—ସବୁ ପରିତ୍ୟାଗ କରି ତାଙ୍କର ଆଶ୍ରୟ ନିଏ, ସେ ସେହି ଭକ୍ତକୁ ନିଜର ଅମୃତମୟ କୋଳରେ ଆଶ୍ରୟ ଦେଇ ତାକୁ ପରମାନନ୍ଦ ପ୍ରଦାନ କରନ୍ତି । ଯେତେ ଯ ହାହେଲେ ମଧ ଆଶ୍ରୟାର୍ଥୀକୁ ସେ କେବେ ପରିତ୍ୟାଗ କରିପାରନ୍ତି ନାହିଁ । ସେଥିପାଇଁ ଶ୍ରୀମଦ୍ଭାଗବତରେ ସ୍ୱୟଂ ଭଗବାନ

ଉପରୋକ୍ତ ବାକ୍ୟ ଘୋଷଣା କରି ଯୁଗ ଯୁଗ ପାଇଁ ଭକ୍ତିର ମାହାତ୍ମ୍ୟ ପ୍ରକାଶ କରିଯାଇଛନ୍ତି । ଭଗବାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଭକ୍ତି ହିଁ ସର୍ବଶ୍ରେଷ୍ଠ ପନ୍ଥା । ଏହି ଭକ୍ତିରେ ଧନର ଗର୍ବ କିମ୍ବା ପାଣ୍ଡିତ୍ୟର ଅହମିକା ନ ଥାଏ । ଥାଏ କେବଳ ଆତ୍ମନିବେଦନ ଏବଂ ଅନନ୍ୟ ପ୍ରେମ । ଭଗବଦ୍ ପ୍ରେମରେ ଥରେ ଲମ୍ଫ ପ୍ରଦାନ କଲେ ସମସ୍ତ ଭବବନ୍ଧନ ଛିନ୍ନ ହୋଇଯାଏ; ଭକ୍ତି ହିଁ ଏ ପ୍ରେମ ସ୍ୱରୂପ । ସେଥିପାଇଁ ଶ୍ରେଷ୍ଠ ଭକ୍ତିଗ୍ରନ୍ଥ "ନାରଦ-ଭକ୍ତି-ସୂତ୍ର"ରେ କୁହାଯାଇଛି—

"ତତ୍ ପ୍ରାପ୍ୟ ତ ଦେବାଲୋକୟତି ତ ଦେବ ଶୃଣୋତି
ତ ଦେବ ଭାଷୟତି, ତ ଦେବ ଚିନ୍ତୟତି ।"

(ନାରଦ-ଭକ୍ତି-ସୂତ୍ର, ୫୫)

ଅର୍ଥାତ୍, ସେହି ପ୍ରେମ ଲଭକରି ପ୍ରେମୀଭକ୍ତ ପ୍ରେମ ହିଁ ଦେଖେ, ପ୍ରେମ ହିଁ ଶୁଣେ, ପ୍ରେମ ହିଁ ବର୍ଣ୍ଣନ କରେ ଏବଂ ପ୍ରେମ ହିଁ ଚିନ୍ତା କରେ ।

ଏଠାରେ ଯେଉଁ ଭକ୍ତ-କଥା ଆଲୋଚିତ ହେଉଛି, ସେହି କଥାରୁ ଜଣାଯିବ, ସେହି ଭକ୍ତ କିପରି ନିଜର ଐକାନ୍ତିକ ଭକ୍ତି ଓ ଅସାଧାରଣ ପ୍ରେମବଳରେ ଜଗନ୍ନାଥଙ୍କର କୃପା ଲଭକରି ନିଜର ଜୀବନକୁ ଧନ୍ୟ କରିଥିଲେ ଏବଂ ଜଗନ୍ନାଥଙ୍କର ଅମୃତମୟ କୋଳରେ ଆଶ୍ରୟ ପାଇ ପରମାର୍ଥର ଅଧିକାରୀ ହୋଇଥିଲେ ।

ସେହି ଭକ୍ତଙ୍କର ନାମ ମଣିଦାସ । ସେ ଜାତିରେ ଥିଲେ ମାଳାକାର । ନିଜର ସ୍ତ୍ରୀ ଓ ପୁତ୍ର-କନ୍ୟାମାନଙ୍କ ସହିତ ସେ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରୁଥିଲେ ଏବଂ ଦୁଃଖେ ସୁଖେ ଯାହା ମିଳୁଥିଲା, ସେଥିରେ ତାଙ୍କ ପରିବାରଟି ଖୁବ୍ ଆନନ୍ଦରେ ଚଳି

ଯାଉଥିଲା; କିନ୍ତୁ ସବୁଦିନ ସମାନ ଯାଏ ନାହିଁ । ସମୟର ପରିବର୍ତ୍ତନରେ ମଣିଷ ଜୀବନରେ ମଧ୍ୟ ପରିବର୍ତ୍ତନ ଆସେ । ହଠାତ୍ ମଣିଦାସଙ୍କ ଜୀବନରେ ଅକାଳ ଚଡ଼କ ପଡ଼ିଲା । ଆତପନ୍ନ ହୋଇ ତାଙ୍କର ସ୍ତ୍ରୀ ଓ ପୁତ୍ରକନ୍ୟାମାନେ ଇହଧାମ ପରିତ୍ୟାଗ କରି ମୃତ୍ୟୁ-ପଥର ଯାତ୍ରୀ ହେଲେ । ବର୍ତ୍ତମାନ ମଣିଦାସଙ୍କ ପରିବାରରେ ସେ ଏକା । ଆତ୍ମୀୟ-ସ୍ୱଜନଙ୍କୁ ହରାଇ ସେ ପ୍ରଥମେ ସାମାନ୍ୟ ବିଚଳିତ ହୋଇ ପଡ଼ିଥିଲେ; କିନ୍ତୁ ପରେ ସେ ଅନୁଭବ କଲେ, ତାହା ତାଙ୍କ ପ୍ରତି ଭଗବାନଙ୍କର ଯେପରି ଏକ ଆଶୀର୍ବାଦ । ସାଂସାରିକ ସମସ୍ତ ମୋହ ପରିତ୍ୟାଗ କରି ବୈରାଗ୍ୟପୂର୍ଣ୍ଣ ହୃଦୟରେ ସେ ଭଗବାନଙ୍କ ପାଦପଦ୍ମରେ ମନ, ପ୍ରାଣ ଅର୍ପଣ କଲେ । ତାଙ୍କ ଜୀବନର ଏକମାତ୍ର ସାଥୀ ଓ ସହାୟ ଭାବରେ ସେ ବଡ଼ଠାକୁର ଜଗନ୍ନାଥଙ୍କୁ ହିଁ ଗ୍ରହଣ କରିନେଲେ । ଡୋର କୌପୀନ ମାତ୍ର ପରିଧାନକରି ଓ ନଡ଼ିଆ ସଢ଼ାଇ ଦୁଇଫାଳ କରତାଳ ଭାବରେ ଗ୍ରହଣ କରି ସେ ବଡ଼ଦାଣ୍ଡ ଓ ଶ୍ରୀମନ୍ଦିରର ଜଗମୋହନରେ ହରିନାମ କୀର୍ତ୍ତନ କରିବାକୁ ଲାଗିଲେ । ଜଗମୋହନରେ ଛିଡ଼ାହୋଇ ସେ ଯେତେ-ବେଳେ ଜଗନ୍ନାଥଙ୍କୁ ଦେଖନ୍ତି, ସେତେବେଳେ ତାଙ୍କ ଶରୀରରେ ରୋମାଞ୍ଚ ଜାତ ହୁଏ, ଚକ୍ଷୁରେ ଅଶ୍ରୁର ପ୍ଲାବନ ଘଟେ ଏବଂ ହୃଦୟରେ ଦାରୁଣ କୋହର ଉଦ୍‌ଭବ ହୁଏ । ସେ ଆଉ ସ୍ଥିରହୋଇ ରହିପାରନ୍ତି ନାହିଁ । ନଡ଼ିଆ ସଢ଼ାଇ ବଜାଇ ଓ ମୁଖରେ ହରିନାମ କୀର୍ତ୍ତନ କରି ସେ ସେହି ଜଗମୋହନରେ ଉଦ୍ଦଣ୍ଡ ନୃତ୍ୟ କରିବାକୁ ଲାଗନ୍ତି । ସେତେବେଳେ ସେ ଭକ୍ତିରେ ତନ୍ମୟ ହୁଅନ୍ତି, ପ୍ରେମରେ ଉନ୍ମତ୍ତ ହୁଅନ୍ତି । ତାଙ୍କର ସେହି ସମୟର ତନ୍ମୟତା ବର୍ଣ୍ଣନା କରିବାକୁ ଯାଇ ଭକ୍ତକବି ରାମଦାସ ସ୍ୱପ୍ରଣୀତ "ଦାର୍ଢ୍ୟତାଭକ୍ତି ରସାମୃତ" ଗ୍ରନ୍ଥରେ ଅତ୍ୟନ୍ତ ମନୋଜ୍ଞ ଭାଷାରେ ଲେଖିଛନ୍ତି—

"ପ୍ରଭାତୁଁ ସ୍ନାନ ସେ କରଇ । ଦ୍ୱାଦଶ ତିଳକ ଧରଇ ।
ଉତ୍ତମ ତୁଳସୀର ହାର । ଗଳାରେ ଭରିଥାଇ ତାର ।
ନଡ଼ିଆ ସଡ଼ାଇ ଢ଼'ଫାଳ । କଟିରେ ଥାଇ କଟିତାଳ ।
କାଖେ ଯାକଣି କନା ଖଣ୍ଡେ । ମେଲଇ ଆସୁଥାଇ ଦାଣ୍ଡେ ।
ମିଳଇ ସିଂହଦ୍ୱାରଠାରେ । ପତିତପାବନ ସମ୍ମୁଖରେ ।
ନୃତ୍ୟ କରଇ ଦାଣ୍ଡେ ରହି । ଅନେକ ଦଣ୍ଡବତ ହୋଇ ।
ତହୁଁ ମିଳଇ ଶ୍ରଦ୍ଧାମନେ । ମିଳଇ ଶ୍ରୀଜଗମୋହନେ ।
ଗରୁଡ଼ ପଛେ ଉଭା ହୋଇ । ପ୍ରଭୁଙ୍କ ଶୋଭାକୁ ଅନାଇ ।
ସାଷ୍ଟାଙ୍ଗେ କରି ଦଣ୍ଡବତ । ଉଠି କପାଳେ ଯୋଡ଼େ ହସ୍ତ ।
ବୋଲଇ ଲୁଚି ହୋଇଥିବ । କଳା ଶ୍ରୀମୁଖ ଚାହିଁଥିବ ।
ତୁମ୍ଭେ ମୋ ଜୀବର କାରଣ । ଦରିଦ୍ର ଲୋକଙ୍କର ଧନ ।
ଏମନ୍ତ ବୋଲି କରେ ନୃତ୍ୟ । ମୁଣ୍ଡ ହଲାଇ ଗାଏ ଗୀତ ।
ସଡ଼ାଇ ତାଳ କରେ ଧରି । ବଜାଇ ଅତି ଆଣ୍ଠେ କରି ।
ବନିତାସୁତ ପାଶେ ଯାଇଁ । ଧାଇଁଣ ପୁଣି ଆସୁଥାଇ ।
କଣ୍ଠ ତା ଅର୍ଗଳୀ ବାଟକୁ । ଚାହିଁଣ କଳା ଶ୍ରୀମୁଖକୁ ।
ପଛକୁ ଘୁଞ୍ଚି ଆସୁଥାଇ । ଜୟ ଶବଦ ତୁଣ୍ଡେ ଗାଇ ।
ଆନନ୍ଦେ ବେନି ଭୁଜ ଧରି । ତୁଣ୍ଡେ ଅନେକ ସ୍ତୁତି କରି ।
ଜୟ ତୁ ଝିଁଟଣ୍ଡି କାଳିଆ । ଜୟ ତୁ କାଉଁରି ମାଳିଆ ।
ନାନା କୁସୁମ ମାଳା ଯେତେ । ଭଲ ସେ ଶୋଭା ଦିଶେ ତୋତେ ।
ହୃଦପଦ୍ମରେ ପଦ୍ମମାଳା । ଯହିଁ କମଳା କରେ ଲୀଳା ।
ଅନେକ ରତ୍ନ ଅଳଙ୍କାର । ପୂରେ ତୋ ସର୍ବାଙ୍ଗଯାକର ।
ଶ୍ରବଣେ ମକର କୁଣ୍ଡଳ । କି ରବିମଣ୍ଡଳ ଯୁଗଳ ।
ଶିରେ କଷ୍ଟି ଝଟି କାନ୍ତ । କି ଅବା ନବଗ୍ରହ ପନ୍ତି ।
ତୋ କଳାନିଧି ମୁଖ ଦେଖି । ଭକତ ଜନ ହୁଏ ସୁଖୀ ।

ସୁନ୍ଦର ଶ୍ୱେତ ପଦ୍ମତୋଳା । ଭକ୍ତ୍ୟ ଆରତ ସିନ୍ଧୁ ଭେଳା ।
ଯେ ତୋର ଶ୍ରୀଭୁଜ ଯୁଗଳ । ଅଶେଷ ପ୍ରାଣୀଙ୍କ ମଙ୍ଗଳ ।
ସେ ଭୁଜେ ଶଙ୍ଖ ଚକ୍ର ଦେଖି । ପିଶାଚ ନ ପାରଇ ଆଖି ।
ତହିଁ ନିଷ୍ଠଳେ ମତି ଯାର । କି କରିପାରେ ଯମ ତାର ।
ତୋହର ଅଭୟ ଚରଣ । ଭକତ ଭୟ ନିବାରଣ ।
ସେ ପାଦପଦ୍ମ ବିନା ଆନେ । ଭରସା ନାହିଁ ମୋର ମନେ ।
ଏମନ୍ତ ବୋଲି ଗୀତ ଗାଇ । ନାଚଇ ଉନମତ୍ତ ହୋଇ ।
ସତାଇ ନାଦ ମୁଖ ଧ୍ୱନି । ଚରଣ ଘଣ୍ଟିକେ ମେଦିନୀ ।
କମ୍ପଇ ଦୁଲି ଦୁଲି ହୋଇ । ତା ଭଙ୍ଗୀ କହି ନ ସରଇ ।
ଏହି ପ୍ରକାରେ ପ୍ରତିଦିନ । ନାଚଇ ଶ୍ରୀଜଗମୋହନ ।"

(ଦାର୍ଢ୍ୟତାଭକ୍ତି-ରସାମୃତ)

ବାସ୍ତବରେ ମଣିଦାସଙ୍କର ଭକ୍ତି ଥିଲି ଅତ୍ୟଦ୍ଭୁତ । ତାଙ୍କର ଦେହ, ମନ, ପ୍ରାଣ, ସବୁ ଜଗନ୍ନାଥମୟ ହୋଇଯାଇଥିଲା । ଖାଇବାକୁ ମିଳୁ କି ନମିଳୁ ସେଥିପ୍ରତି ତାଙ୍କର କୌଣସି ଶୋଚନା ନ ଥିଲା; କିନ୍ତୁ ଜଗନ୍ନାଥ କେବେ ହେଲେ ଭକ୍ତର ଆବଶ୍ୟକତା ଅପୂରଣୀୟ ରଖନ୍ତି ନାହିଁ । ସେ ନିଜେ ତ ଭଗବଦ୍‌ଗୀତାରେ କହିଛନ୍ତି—

ଅନନ୍ୟାଶ୍ଚିନ୍ତୟନ୍ତୋ ମାଂ ଯେ ଜନାଃ ପର୍ଯ୍ୟୁପାସତେ
ତେଷାଂ ନିତ୍ୟାଭିଯୁକ୍ତାନାଂ ଯୋଗକ୍ଷେମଂ ବହାମ୍ୟହଂ ।"

(ଶ୍ରୀମଦ୍‌ଭଗବଦ୍‌ଗୀତା, ୯-୨୨)

ଯେଉଁମାନେ ଅନ୍ୟଠାରେ ଆସକ୍ତ ନହୋଇ ଧ୍ୟାନପୂର୍ବକ ମୋର ଉପାସନା କରନ୍ତି, ସେମାନେ ସର୍ବଦା ମୋଠାରେ ଏକାଗ୍ରଚିତ୍ତ

ହୋଇଥିବାରୁ, ତାଙ୍କୁ ମୁଁ ଯୋଗ (ଅପ୍ରାପ୍ତ ବସ୍ତୁର ପ୍ରାପ୍ତି) ଓ କ୍ଷେମ (ପ୍ରାପ୍ତବସ୍ତୁର ରକ୍ଷା) ପ୍ରଦାନ କରେ ।

ଯାହା କିଛି ମିଳୁଥିଲା, ସେଥିରେ ନିଜର ଆବଶ୍ୟକତା ପୂରଣ କରି ମଣିଦାସ ସର୍ବଦା ଭଜନ, କୀର୍ତ୍ତନ ଓ ନର୍ତ୍ତନରେ ମନୋନିବେଶ କରୁଥିଲେ ।

ଅତି ପୁରାତନ କାଳରୁ ମନ୍ଦିରମାନଙ୍କରେ ପୁରାଣପାଠ ହେବାର ବିଧି ପ୍ରଚଳିତ ହୋଇ ଆସୁଅଛି । ଶ୍ରୀମନ୍ଦିରରେ ମଧ୍ୟ ବର୍ଷଯାକ ବିଭିନ୍ନ ପୁରାଣପାଠ ହେବାର ବିଧି ପ୍ରଚଳିତ ଥିଲା । ଖୋର୍ଦ୍ଧାର ଗଜପତି ମହାରଜା ଶ୍ରୀମନ୍ଦିରର ଜଗମୋହନରେ ପୁରାଣ-ପାଠ କରିବାପାଇଁ ପୁରାଣପଣ୍ଡା ନିଯୁକ୍ତ କରିଥିଲେ । ପୁରାଣପଣ୍ଡା ଜଗମୋହନରେ ବସି ଯେତେବେଳେ ପୁରାଣ ପାଠ କରୁଥିଲେ, ସେତେବେଳେ ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ଲୋକମାନେ ସେଠାରେ ରୁଣ୍ଡ ହୋଇ ପୁରାଣ ଶ୍ରବଣ କରୁଥିଲେ ଏବଂ ଯଥାଶକ୍ତି ଦକ୍ଷିଣା ଦେଇ ପୁରାଣପଣ୍ଡାଙ୍କୁ ସନ୍ତୁଷ୍ଟ କରୁଥିଲେ ।

ଯେତେବେଳେ ଜଗମୋହନରେ ପୁରାଣପାଠ ହେଉଥିଲା, ଠିକ୍ ସେହି ସମୟରେ ମଣିଦାସ ସେଠାକୁ ଆସି ଉଚ୍ଚସ୍ୱରରେ ଜଣାଣ ଗାଉଥିଲେ ଏବଂ କରତାଳି ବଜାଇ ଉଦ୍ଦଣ୍ଡ ନୃତ୍ୟ କରୁଥିଲେ । ଫଳରେ ପୁରାଣପଣ୍ଡା ପୁରାଣପାଠ କରିବାରେ ଯେପରି ଅସୁବିଧାର ସମ୍ମୁଖୀନ ହେଉଥିଲେ, ଶ୍ରୋତାମାନେ ପୁରାଣ ଶୁଣିବାରେ ମଧ୍ୟ ସେହିପରି ଅସୁବିଧାର ସମ୍ମୁଖୀନ ହେଉଥିଲେ ।

ଦିନେ ପୁରାଣ ପଣ୍ଡା କ୍ରୋଧୋନ୍ମତ୍ତ ହୋଇ ମଣିଦାସଙ୍କୁ କହିଲେ—'ଆରେ ମୂର୍ଖ ! ଏଠାରେ ଯେ ବସ୍ତୁ ପୁରାଣ ପାଠ

ହେଉଛୁ, ତାହା କ'ଣ ତୋତେ ଦିଶୁନାହିଁ ? କେତେ କେତେ ଲୋକ ଆସି ଏଠାରେ ପୁରାଣ ଶୁଣୁଛନ୍ତି, ସମସ୍ତଙ୍କୁ ଅବମାନନା କରି ତୁ ଏଠାରେ ନୃତ୍ୟ କରୁଛୁ ! ତୋର ସଡ଼ଇ ବାଜା ଓ ଉଚ୍ଚ କଣ୍ଠ-ସଙ୍ଗୀତ ଧ୍ୱନି ସମସ୍ତେ ଯେ ଅତିଷ୍ଠ ହୋଇ ପଡ଼ିଲେଣି । ପବିତ୍ର କୃଷ୍ଣ ପୁରାଣ ଶୁଣିବାକୁ ତୋର ଟିକିଏ ମନ ହେଉନି ? ଧିକ୍ ତୋର ଜନ୍ମ, ଧିକ୍ ତୋର ପିତାମାତା !"

ପୁରାଣ ପଣ୍ଡାଙ୍କ ମୁଖରୁ ଏପରି କଟୁକଥା ଶୁଣି ମଧ୍ୟ ମଣିଦାସ ନୀରବ ରହିଲେ ।

ଯେଉଁ ଲୋକମାନେ ସେଠାରେ ପୁରାଣ ଶୁଣୁଥିଲେ, ସେମାନେ ତାଙ୍କର ନୀରବତା ଦେଖି ସମସ୍ୱରରେ କହି ଉଠିଲେ—"ରେ ଅଧମ ମଣିଦାସ ! ତୁ ପୁରାଣପଣ୍ଡାଙ୍କ କଥାକୁ ଅବଜ୍ଞାକରି ପୁଣି ନୃତ୍ୟ କରୁଛୁ ! ଆଉ ଯଦି କେବେ ତୁ ଆମ ପୁରାଣପାଠରେ ବାଧା-ସୃଷ୍ଟି କରୁ, ତେବେ ଆମେ ବାଧ୍ୟହୋଇ ତୋତେ ଗଳାଧକ୍କା ଦେଇ ମନ୍ଦିରରୁ ବାହାର କରିଦେବୁ ।"

ଲୋକମାନଙ୍କର ଏହି କଥା ମଣିଦାସଙ୍କୁ ଭୀଷଣ ଭାବରେ ଆଘାତ ଦେଲା । ସେ ଚକ୍ଷୁରୁ ଲୋତକ ଝରାଇ ବାଷ୍ପରୁଦ୍ଧ କଣ୍ଠରେ ଜଗନ୍ନାଥଙ୍କୁ ଗୁହାରି କହିଲେ—

"× × ଆହେ ମହାବାହୁ । ଶରଣ ପଞ୍ଜର ବୋଲାଉ ।
ତୋତେ ବହିଛୁ ବାହୁଦଣ୍ଡ । ଶରଣ ସମ୍ଭାଳିବା ପାଇଁ ।
ମୁଁ ଯେ ଅଟଇ ତୋ ଶରଣ । ମୋତେ ବଳିଲୁ ଏ କଷଣ ।
ଇତର ଲୋକ ହୋଇଥିଲେ । ଶରଣ ସମ୍ଭାଳନ୍ତା ଭଲେ ।
ଜାଣିଲି ତୋର ପ୍ରଭୁପଣ । ଭୃତ୍ୟରେ ବଡ଼ଇ ଦାରୁଣ ।
(ଦାର୍ଢ୍ୟତାଭକ୍ତି)

ଅଭିମାନଭରେ ଏହି କେତେପଦ କଥା କହି ମଣିଦାସ ଜଗନ୍ନାଥଙ୍କ ଉପରକୁ ସଡ଼ାଇ ଦୁଇଫାଳ ନିକ୍ଷେପପୂର୍ବକ ଶ୍ରୀମନ୍ଦିରରୁ ବାହାରିଗଲେ ଏବଂ ନିଜର କ୍ଷୁଦ୍ର କୁଟୀରରେ ପ୍ରବେଶକରି ବିକଳ-କଣ୍ଠରେ କାନ୍ଦିବାକୁ ଲାଗିଲେ । ସେଦିନ ସେ କୌଣସି ଖାଦ୍ୟ କି ପାନୀୟ ଗ୍ରହଣ କଲେ ନାହିଁ କିମ୍ବା ସଂଧ୍ୟା ଆଳତି ଦେଖିବାକୁ ଶ୍ରୀମନ୍ଦିରକୁ ଗଲେ ନାହିଁ ।

ଧୀରେ ଧୀରେ ରଜନୀର ଘନାନ୍ଧକାର ବଢ଼ିବାକୁ ଲାଗିଲା । ଶ୍ରୀମନ୍ଦିରର ସେବକମାନେ ଜଗନ୍ନାଥଙ୍କର ବଡ଼ସିଂହାର ବେଶକରି ମନ୍ଦିର ରୁଦ୍ଧ କଲେ ଏବଂ ସ୍ୱ-ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ସେଦିନ ରଜନୀରେ କିନ୍ତୁ ଜଗନ୍ନାଥଙ୍କୁ ନିଦ ନ ଥିଲା । ଭକ୍ତର ଅପମାନକୁ ସେ ନିଜର ଅପମାନ ବୋଲି ମନେକରି ନେଇଥିଲେ । ଭକ୍ତର ଦୁଃଖରେ ଦୁଃଖୀ ହୋଇ ସେ ଶ୍ରୀ ମନ୍ଦିରରୁ ବାହାରିଗଲେ ଏବଂ ଭକ୍ତ ନିକଟରେ ଆବିର୍ଭୂତ ହୋଇ ତାଙ୍କର ସମସ୍ତ ଦୁଃଖ ମୋଚନ କଲେ । ମଣିଦାସ ଦେଖିଲେ, ତାଙ୍କ ସମ୍ମୁଖରେ ଭକ୍ତବତ୍ସଳ ଜଗନ୍ନାଥ ଦଣ୍ଡାୟମାନ । ଆନନ୍ଦରେ ଅଧୀର ହୋଇ ସେ ଜଗନ୍ନାଥଙ୍କ ପାଦପଦ୍ମରେ ଲୋଟି ପଡ଼ିଲେ ଏବଂ ଆନନ୍ଦାଶ୍ରୁ ଜଳରେ ପାଦ ଧୌତକରି କୋଟିଜନ୍ମର ପାପରାଶିରୁ ମୁକ୍ତ ହୋଇଗଲେ । ଜଗନ୍ନାଥ ଭକ୍ତଙ୍କୁ ଆଲିଙ୍ଗନକରି କହିଲେ—"ପ୍ରିୟ ମଣିଦାସ ! ତୁମେ ମୋ ପ୍ରତି ଯେଉଁ ଭକ୍ତି ପ୍ରଦର୍ଶନ କରୁଛ, ବାସ୍ତବରେ ତାହା ଅତି ଉଚ୍ଚକୋଟୀର । ତୁମର ସେହି ଭକ୍ତି ଆଜ ମୋତେ ତୁମ ନିକଟକୁ ଟାଣିଆଣିଛି । ଆଜିଠାରୁ ତୁମର ସମସ୍ତ ଦୁଃଖ ଦୂର ହୋଇଯିବ । ତୁମେ ଶ୍ରୀମନ୍ଦିରର ଜଗମୋହନରେ ନୃତ୍ୟ ସହିତ କୀର୍ତ୍ତନ କରିବାର ସୁଯୋଗ ପାଇବ ଏବଂ ମୃତ୍ୟୁ ଅନ୍ତେ ମୋର ଅମୃତମୟ କୋଳରେ ଆଶ୍ରୟ ଲାଭ କରିବ ।

ଏହିପରି ଅଭୟ ବାଣୀ ପ୍ରଦାନକରି ପ୍ରଭୁ ଜଗନ୍ନାଥ ଭକ୍ତ ନିକଟରୁ ଅନ୍ତର୍ହିତ ହୋଇଗଲେ ଏବଂ ଖୋର୍ଦ୍ଧାର ତତ୍କାଳୀନ ମହାରଜାଙ୍କୁ ସ୍ୱପ୍ନରେ ଦର୍ଶନ ଦେଇ କହିଲେ—

"× × ଶୁଣରେ ନୃପତ । ତୁ ତ ଅଜ୍ଞାନେ ହେଲୁ ମତ୍ତ ।
ତୋ ରାଜ୍ୟ ହାନିଲଭ ଯେତେ । ତାହା ନ ବୁଝୁ କି ନିମନ୍ତେ ।
ଏବେ ହେ ଶୁଣ ଶୁଦ୍ଧଚିତ୍ତେ । ମୁଁ ଯାହା କହୁଅଛି ତୋତେ ।
ମୋର ମଣିଆ ଦାସ ଆସି । ଜଗମୋହନ ଘରେ ପଶି ।
ସତ୍ତାଳ ତାଳ କରେ ଧରି । ଅନେକ ନ ମଧୁନ କରି ।
ନୃତ୍ୟ କରଇ ଆମ୍ଭ ପାଖେ । ଆମ୍ଭେ ତା ଶୁଣୁଥାଉ ସୁଖେ ।
ମୋର ତହିଁରେ ଯେତେ ଲୀଳ । ଶୁଣ କହିବା ତହିଁ ଭାବ ।
ତୋହର ଯେସନେ ନନ୍ଦନ । ପାଞ୍ଚ ସାତରେ ଯେହ୍ନ ସାନ ।
ବରଷେ ପୂରଣ ନ ଥାଇ । ଆସଇ ଗେହ୍ଲାଇ ଗେହ୍ଲାଇ ।
କହଇ ଦଶ୍ରୋଟି ବଚନ । କେବଳ ଅମୃତ ସମାନ ।
ତାହା ଯେମନ୍ତେ ଶୁଣୁ ତୁହି । ତହୁଁ ଅଧିକ ମୋତେ ସେହି ।
ତାକୁ ପୁରାଣ ପଣ୍ଡା ତୋର । ମାରି ମୋ ପାଶୁ କଲା ଦୂର ।
ତେଣୁ ଭକତ ରୁଷିଗଲା । ଗ୍ରାମକୁ ମୋହର ନଇଲା ।
ତେଣୁ ମୁଁ ଉପବାସେ ଅଛି । ତାକୁ ମୁଁ ନ ପାରଇ ମୁର୍ଚ୍ଛି ।
ଭୃତ୍ୟ ଅଇଲା ଯାଏ ମୋର । ମଣୋହି ନାହିଁଟି ମୋହର ।
ଏବେ ତୁ ବେଗହୋଇ ଯିବୁ । ମୋର ଭକ୍ତକୁ ଡକାଇବୁ ।
ଅନେକ ଗଉରବ କରି । ଦେନାଇଯିବୁ ଦଣ୍ଡଧାରୀ ।
ସୁଉଡ଼ବୁ ଶ୍ରୀଜଗମୋହନେ । ନୃତ୍ୟ କରିବ ପ୍ରତିଦିନେ ।
ତେବେ ମୁଁ କରିବି ଭୋଜନ । ଏକଥା ସତ୍ୟ ବୋଲି ଜାଣ ।

× × ×

ପୁରାଣ ପଣ୍ଡା ଆଜଠାରୁ । ମୋ ଆଗେ ପୁରାଣ ନ କରୁ ।
ପାରିଲେ ଲକ୍ଷ୍ମୀଙ୍କ ମୋହନେ । ପୁରାଣ କରୁ ପ୍ରତିଦିନେ ।
ଭୃତ୍ୟକୁ କଲେ ମୋର ଦୂର । ନହିବ ନାହିଁ ନିରାଧାର ।"

(ଦାର୍ଢ୍ୟତା ଭକ୍ତି)

ରାଜାଙ୍କୁ ଏହିପରି ନିର୍ଦ୍ଦେଶ ଦେଇ ଜଗନ୍ନାଥ ସେଠାରୁ ଅଦୃଶ୍ୟ ହୋଇଗଲେ । ରାଜା ସ୍ୱପ୍ନରେ ଜଗନ୍ନାଥଙ୍କର ଦର୍ଶନ ପାଇ ନିଜକୁ କୃତକୃତ୍ୟ ହେଲେ ଓ ଜଗନ୍ନାଥ ଯେ କିପରି ଭକ୍ତପାଇଁ ବ୍ୟାକୁଳ ତାହା ଅନୁଭବ କରି ପରମାନନ୍ଦ ଲାଭ କଲେ ।

ତତ୍ପରଦିନ ପ୍ରଭାତରେ ରାଜା ନିଦ୍ରାରୁ ଉଠି ଅଶ୍ୱାରୋହଣ ପୂର୍ବକ ଶ୍ରୀକ୍ଷେତ୍ରକୁ ଗମନ କଲେ । ସେଠାରେ ସେ ମଣିଦାସଙ୍କୁ ସମ୍ମାନ ପ୍ରଦର୍ଶନ କରି ଶ୍ରୀମନ୍ଦିରକୁ ନେଇ ଆସିଲେ । ଶ୍ରୀମନ୍ଦିରର ଜଗମୋହନରେ ସେ ନିଜ ହାତରେ ମଣିଦାସ ମୁଣ୍ଡରେ ପାଟ ବାନ୍ଧିଦେଲେ ଏବଂ ନଡ଼ିଆ ସଢ଼ାଇ ଦୁଇଫାଳ ତାଙ୍କ ହାତରେ ଧରାଇ ଦେଲେ । ତାହାପରେ ସେ ମଣିଦାସଙ୍କୁ କହିଲେ—"ହେ ମଣିଦାସ ! ପ୍ରଭୁ ଜଗନ୍ନାଥ ତୁମ ଭକ୍ତିରେ ସନ୍ତୁଷ୍ଟ ହୋଇ ତୁମର ଅଭୀଷ୍ଟ ପୂରଣ କରିଛନ୍ତି । ତୁମେ ଆଜୀବନ ଏହିଠାରେ ସଢ଼ାଇ ବାଜା ବଜାଇ ନୃତ୍ୟକର ଏବଂ ଶ୍ରୀମନ୍ଦିରର ବାୟୁମଣ୍ଡଳକୁ ପବିତ୍ରତାରେ ଭରିଦିଅ । ସୁଲଳିତ କଣ୍ଠରେ ଭଜନ ଗାଇ ତୁମେ ଜଗନ୍ନାଥଙ୍କ ହୃଦୟରେ ଆନନ୍ଦର ଢେଉ ଖେଳାଇ ଦିଅ ।"

ତାହାପରେ ରାଜା ପୁରାଣ ପଣ୍ଡାଙ୍କୁ ଡାକି ନିର୍ଦ୍ଦେଶ ଦେଲେ—"ହେ ପୁରାଣ ପଣ୍ଡା ! ତୁମେ ଆଜଠାରୁ ଜଗମୋହନରେ ପୁରାଣପାଠ ନ କରି ଲକ୍ଷ୍ମୀ ମନ୍ଦିରରେ ପୁରାଣ ପାଠ କରିବ । ଜଗମୋହନରେ

କେବଳ ଭକ୍ତର ଅଧିକାର, ସେଠାରେ ଜ୍ଞାନୀ କମ୍ବା ଯୋଗୀମାନଙ୍କର କୌଣସି ଅଧିକାର ନାହିଁ ।"

ସେହି ଦିନଠାରୁ ରାଜାଙ୍କର ନିର୍ଦ୍ଦେଶ ପାଳିତ ହେଲା । ଆଜି ପର୍ଯ୍ୟନ୍ତ ମଧ୍ୟ ସେହି ନିର୍ଦ୍ଦେଶ ପାଳିତ ହୋଇ ଆସୁଅଛି । ପୁରାଣପଣ୍ଡା ଜଗମୋହନରେ ପୁରାଣ ପାଠ ନ କରି ଲକ୍ଷ୍ମୀ ମନ୍ଦିରରେ ପୁରାଣ ପାଠ କରନ୍ତି । ଏହା ଯେ କେହି ଲକ୍ଷ୍ୟ କରିଥିବେ । ଭକ୍ତ ମୁଖରୁ ଭକ୍ତି-ସଙ୍ଗୀତ ଶୁଣିବାକୁ ଭଗବାନ ଯେ କେତେ ବ୍ୟାକୁଳ, ତାହା ମଣିଦାସଙ୍କ ଜୀବନ ଚରିତରୁ ସହଜରେ ଅନୁମିତ ହୁଏ । ଜଗନ୍ନାଥଙ୍କର ଭକ୍ତବତ୍ସଳତା ଯୁଗେ ଯୁଗେ ଭକ୍ତକୁ ଆଲୋକ ଦେଖାଏ, ଭକ୍ତର ସମସ୍ତ ଦୁଃଖ ଦୂର କରି ତାକୁ ପରମାନନ୍ଦ ପ୍ରଦାନ କରେ ।

ଜଗନ୍ନାଥ ! ତୁମ ମହିମାର ଆଦି ନାହିଁ କି ଅନ୍ତ ନାହିଁ ! ନିଜ ମହିମାରେ ତୁମେ ନିଜେ ହିଁ ମହିମାମୟ !!



# ରତ୍ନବେଦୀର ଶ୍ରୀଜଗନ୍ନାଥ

ପ୍ରଳୟ ପୟୋଧିଜଳେ ଧୃତ ବାନସି ବେଦମ୍
ବିହିତ ବହିତ୍ର ଚରିତ୍ରମଖେଦମ୍ ।
କେଶବ ଧୃତ-ମୀନ ଶରୀର ।
ଜୟ ଜଗଦୀଶ ! ହରେ ।
(ଗୀତ ଗୋବିନ୍ଦ ଦଶାବତାର ସ୍ତୋତ୍ର)

ପ୍ରଳୟକାଳର ସମୁଦ୍ରଜଳରେ, ତୁମେ ବୋଇତ ପରି ଭାସି ଭାସି ଅନାୟାସରେ ବେଦ ଉଦ୍ଧାର କରିଅଛ । ହେ ମୀନରୂପଧର ଜଗଦୀଶ୍ୱର କେଶବ ! ତୁମେ ଜୟଯୁକ୍ତ ହୁଅ ।

ଉପନିଷଦୀୟ ଭାଷାରେ ଜଗତ୍‌ପିତା ଜଗନ୍ନାଥ "ଅବାଙ୍ମାନସ-ଗୋଚର" ହେଲେ ମଧ୍ୟ ବାସ୍ତବରେ ସେ ଲୀଳାପ୍ରିୟ । ଯେତେବେଳେ ପୃଥିବୀରେ ଧର୍ମର ହ୍ରାସ ହୁଏ ଏବଂ ଅଧର୍ମର ବୃଦ୍ଧି ହୁଏ, ସେତେବେଳେ ସେ ପୃଥିବୀରୁ ଅଧର୍ମ ଲୋପକରି ଧର୍ମ ସଂସ୍ଥାପନ କରିବା ନିମିତ୍ତ ଲୀଳା-ବିଗ୍ରହ ଧାରଣ କରନ୍ତି ଏବଂ ବିଭିନ୍ନ ମନୋରମ ଲୀଳା ପ୍ରଦର୍ଶନ କରି ଜଗତର ପ୍ରଭୂତ କଲ୍ୟାଣ ସାଧନ କରନ୍ତି । ଲୀଳା-ବିଗ୍ରହରେ ସେ ଯେଉଁ ସବୁ ଲୀଳା ପ୍ରଦର୍ଶନ କରନ୍ତି, ତାହା ଯେପରି ସୁଖପ୍ରଦ, ସେହିପରି ମୋକ୍ଷମାର୍ଗର ଦିଗ୍‌ଦର୍ଶକ ।

ତାଙ୍କର ଆବିର୍ଭାବ କାଳରେ ଜନସମାଜ ତାଙ୍କର ମହତ୍ତ୍ୱ ବିଶେଷ ଭାବରେ ଉପଲବ୍ଧି କରି ନ ପାରିଲେ ମଧ୍ୟ ପରେ ସେ ଅବତାର ଭାବରେ ପୂଜିତ ହୁଅନ୍ତି ଏବଂ ତାଙ୍କର ଅତିମାନୁଷିକ ଲୀଳାର ମହତ୍ତ୍ୱ ଜନସମାଜର ଆଦର୍ଶ ହୋଇ ରହେ । ସୃଷ୍ଟିର ପ୍ରାରମ୍ଭରୁ ଆଜ-ପର୍ଯ୍ୟନ୍ତ ବିଭିନ୍ନ ଯୁଗରେ ବିଭିନ୍ନ ଅବତାର ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି । ସେଥି ମଧ୍ୟରୁ ଦଶାବତାର ସର୍ବଶ୍ରେଷ୍ଠ ଏବଂ ବିଶେଷ ଭାବରେ ଜନସମାଜର ବନ୍ଦନୀୟ । ମତ୍ସ୍ୟ, କଚ୍ଛପ, ଶୂକର, ନୃସିଂହ, ବାମନ, ପରଶୁରାମ, ରାମ, ବଳରାମ, ବୁଦ୍ଧ, କଳ୍କୀ ଆଦି ଦଶାବତାର ମଧ୍ୟରେ ମତ୍ସ୍ୟାବତାର ସର୍ବ ପ୍ରଥମ । ଯେତେବେଳେ ସମଗ୍ର ପୃଥିବୀ ପ୍ରଳୟକାଳୀନ ଜଳରେ ମଗ୍ନ ଥିଲା ଏବଂ ଶଙ୍ଖାସୁର ନାମରେ ଏକ ଅସୁର ବେଦ ଚତୁଷ୍ଟୟ ଅପହରଣ କରି ଲୁଚାଇ ରଖିଥିଲା, ସେହି ସମୟରେ ଭଗବାନ ବିଷ୍ଣୁ ମୀନାବତାର ଧାରଣ କରିଥିଲେ । ମୀନାବତାରରେ ସେ ଶଙ୍ଖାସୁରକୁ ହତ୍ୟାକରି ବେଦଚତୁଷ୍ଟୟ ଉଦ୍ଧାର କରିଥିଲେ; ଏବଂ ପୃଥିବୀକୁ ଧର୍ମସଙ୍କଟରୁ ରକ୍ଷା କରିଥିଲେ । ସତ୍ୟଯୁଗର ପ୍ରାରମ୍ଭରେ ସେ ଯେ କେବଳ ମୀନାବତାର ଧାରଣକରି ମୁନିଋଷିମାନଙ୍କର ଇଷ୍ଟସାଧନ କରିଥିଲେ ତାହା ନୁହେଁ, ଏହି କଳିଯୁଗରେ ମଧ୍ୟ ସେ ଥରେ ମୀନାବତାରରେ ଆବିର୍ଭୂତ ହୋଇଥିଲେ । ରଘୁ ଦେବେହେର ନାମକ ଜନୈକ ଉତ୍କଳୀୟ ଭକ୍ତ ନିକଟରେ ସେ ମୀନାବତାର ଧାରଣ କରି ତାହାଙ୍କୁ ମୋକ୍ଷମାର୍ଗରେ ପରିଚାଳିତ କରିଥିବାର କିମ୍ବଦନ୍ତୀ ଉତ୍କଳର ପୁରପଲ୍ଲୀରେ ସୁବିଦିତ ।

ଶ୍ରୀକ୍ଷେତ୍ରର ଅଦୂରବର୍ତ୍ତୀ 'ପିପିଲି' ନାମକ ଗ୍ରାମରେ ରଘୁ-ଦେବେହେରର ଜନ୍ମ । ସେ ଥିଲା ଜାତିରେ ଧୀବର । ଫଳରେ ମାଛମାରି ଜୀବିକା ନିର୍ବାହ କରିବା ତା'ର ଥିଲା କୌଳିକ ଧର୍ମ ।

ତା' ପରିବାରରେ ଥିଲେ ତିନି ପ୍ରାଣୀ—ତା'ର ମାତା, ତା'ର ସ୍ତ୍ରୀ ଏବଂ ସେ ନିଜେ । ତେଣୁ ମାଛ ବ୍ୟବସାୟରେ ତା' ପରିବାରଟି ଖୁବ୍ ଆରାମରେ ଚଳିଯାଉଥିଲା ।

ଏହି ପରିବର୍ତ୍ତନଶୀଳ ଦୁନିଆଁରେ ସମସ୍ତଙ୍କ ଜୀବନରେ କିଛି ନା କିଛି ପରିବର୍ତ୍ତନ ଘଟେ । ରଘୁ କେଉଟର ଜୀବନରେ ସେହିପରି ଏକ ପରିବର୍ତ୍ତନ ଘଟିଲା । କୌଣସି ଏକ ସାଧୁଙ୍କର ସତ୍‌ସଙ୍ଗ ଫଳରେ ସେ ସାଂସାରିକ ସୁଖର ଅସାରତା ଉପଲବ୍‌ଧି କରିପାରିଲା ଏବଂ ମନୁଷ୍ୟ ଜୀବନର ମହାନ୍ ଲକ୍ଷ୍ୟ ଯେ ଭଗବଦ୍ ସାକ୍ଷାତ୍‌କାର—ତାହା ହୃଦୟଙ୍ଗମ କରିବାକୁ ସମର୍ଥ ହେଲା । ଏଥର ସେ ଜୀବନକୁ ସତ୍‌ମାର୍ଗରେ ପରିଚାଳିତ କରିବ ବୋଲି ମନସ୍ଥ କରି ଜଣେ ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କଲା । ଇଷ୍ଟମନ୍ତ୍ର ଜପକରି ପ୍ରତ୍ୟହ ଭାଗବତ ପଠନରେ ମନୋନିବେଶ କଲା । ଭାଗବତ ପାଠ କରୁକରୁ ଥରେ ସେ ଚିନ୍ତାକରିବାକୁ ଲାଗିଲା—"ମୁଁ କେଡ଼େ ଅଧମ ! ମୁଁ କେଡ଼େ ପାପୀ ! ପ୍ରତ୍ୟହ ମାଛ ମାରି ଜୀବହତ୍ୟା-ରୂପକ ଘୋର ପାପ ମୁଁ ଅର୍ଜନ କରୁଛି । ଜୀବହତ୍ୟା କରି ଭଗବାନଙ୍କର କୃପା ଲାଭକରିବା କ'ଣ ସମ୍ଭବ ? ହେ ଜଗନ୍ନାଥ ! ମୋତେ କାହିଁକି ଧୀବରକୁଳରେ ଜନ୍ମ ଦେଲ ପ୍ରଭୁ ! ମାଛମାରି ଜୀବିକାନିର୍ବାହ କରିବା ଛଡ଼ା ମୋର ଯେ ଆଉ କିଛି ଉପାୟ ନାହିଁ । ମାଛମାରି ଜୀବହତ୍ୟାଜନିତ ଘୋର ପାପ ଅର୍ଜନ କଲେ ମୋ ଆତ୍ମାର ଗତିପଥ ନରକକୁ ହେବ ସିନା ! ମୋ ପରିବାରର ଭରଣପୋଷଣ ପାଇଁ ଜୀବିକାର୍ଜନର ଆଉ କିଛି ଉପାୟ ବତାଇ ଦିଅ ପ୍ରଭୁ !"

ଏହିପରି ଚିନ୍ତାକରି ରଘୁ କେଉଟ ଆଉ ମାଛ ମାରିବାକୁ ଗଲାନାହିଁ । ଫଳରେ ତା ପରିବାରରେ ଅଭାବ ଅସୁବିଧା ବଢ଼ିବାକୁ ଲାଗିଲା । ବିନା ଜୀବିକାର୍ଜନରେ ଦରିଦ୍ର ପରିବାରଟି କେତେ ଦିନ

ଚଳପାରନ୍ତା ? ରଘୁ ବେହେରାର ମାତା ଏବଂ ପତ୍ନୀ ରଘୁର ଏପରି ଆଚରଣ ଦେଖି ଅତ୍ୟନ୍ତ ଉତ୍‌କ୍ଷିପ୍ତ ହୋଇପଡ଼ିଲେ । କ୍ଷୁଧା ତୃଷାର ଦାରୁଣ ଯନ୍ତ୍ରଣା ସହି ନ ପାରି ସେମାନେ ରଘୁ ବେହେରାକୁ ନାନା ଭାଷାରେ ଗାଳି କରିବାକୁ ଲଗିଲେ ଏବଂ ତା'ର ଭାଗବତ ପାଠରେ ବାଧା ସୃଷ୍ଟି କଲେ । ଶେଷରେ ରଘୁ ବେହେରା ଅନନ୍ୟୋପାୟ ହୋଇ ଅତ୍ୟନ୍ତ ଦୁଃଖରେ ଜାଲଧରି ମାଛ ମାରିବାକୁ ଗଲା । ପୁଷ୍କରିଣୀରେ ପଶି ସେ ଜାଲ ପକାଇବା ମାତ୍ରେ ଜାଲରେ ଗୋଟିଏ ବଡ଼ ରୋହିମାଛ ପଡ଼ିଲା । ଜାଲଟିକୁ କୂଳକୁ ଆଣି ସେ ଜାଲରୁ ମାଛଟିକୁ ଉଦ୍ଧାର କଲା । ତାହାପରେ ସେ ଚିନ୍ତା କଲା—

"× × × । ଏହାକୁ ମାରିବି କେମନ୍ତେ ।
ସାକ୍ଷାତେ ମୀନ ଅବତାର । ଯେହୁ ମାରିଲେ ଶଙ୍ଖାସୁର ।
ସେ ଦିବ୍ୟରୂପ ନାଶକରି । ମୁଁ କେହ୍ନେ ଥିବି ଦେହ ଧରି ।
ଯେବେ ନ ମାରିବି ଏ ମୀନ । ମୋତେ ନ ମିଳିବ ଭୋଜନ ।
ପତ୍ନୀ ଯେ ଦୁଆରୁ ତଡ଼ିବ । ଅନ୍ନ ନ ଦେଇ ଘଉଡ଼ିବ ।"

(ଦାର୍ଢ୍ୟତା ଭକ୍ତି ରସାମୃତ)

ମତ୍ସ୍ୟଟିକୁ ମୀନାବତାର ବୋଲି ମନେକରି ରଘୁ ବେହେରାର ହୃଦୟ ଦୁଃଖରେ ଭାଙ୍ଗିପଡ଼ିଲା; କିନ୍ତୁ ମତ୍ସ୍ୟଟିକୁ ନ ମାରିଲେ ଯେ ନ ଚଳେ ? ପତ୍ନୀର ତାଡ଼ନା ସାଙ୍ଗକୁ କ୍ଷୁଧାର ଯନ୍ତ୍ରଣା ସହିବା ଅପେକ୍ଷା ମତ୍ସ୍ୟଟିକୁ ହତ୍ୟାକରି ବନ୍ଦୀ କରିବାକୁ ସେ ମନସ୍ଥ କଲା । ମାରିବା ପୂର୍ବରୁ ମତ୍ସ୍ୟକୁ ସମ୍ବୋଧନ କରି ସେ କହିଲା—

"× × ମୀନରୂପୀ ଶୁଣ । ତୁ ଯାହା କରିଛୁ ଭିଆଣ ।
ମୋର ତ ଧୀବର ସ୍ୱଭାବ । କେ ତାହା ଅନ୍ୟଥା କରିବ ।
ତୋତେ ନ କଲେ ଆଜ ନାଶ । ମୋତେ ତ ନ ମିଳିବ ଗ୍ରାସ ।
ଏଣୁ ମାରିବା କଥା ସତ । × × ×।"

(ଦାର୍ଢ୍ୟତା ଭକ୍ତି)

ତାହାପରେ ଯେତେବେଳେ ସେ ମାଛଟିକୁ ମାରିବାପାଇଁ ତାହାର ତଣ୍ଡି ଚିପିବାକୁ ବସିଲା, ସେତେବେଳେ ଅତି ଆଶ୍ଚର୍ଯ୍ୟ ଭାବରେ ମାଛଟି ଡାକଦେଲା—"ନାରାୟଣ ! ରକ୍ଷାକର !"

ମତ୍ସ୍ୟ ମୁଖରୁ ଏପରି ମନୁଷ୍ୟ-ଭାଷା ଶୁଣି ରଘୁ କେହେରା ସତେ ଯେପରି ଜଡ଼ ପାଲଟି ଗଲା । ବହୁକ୍ଷଣ ପର୍ଯ୍ୟନ୍ତ ସେ କ'ଣ କରିବ କିଛି ଠିକ୍ କରିପାରିଲା ନାହିଁ । ତାହାପରେ ସେ ବୈରାଗ୍ୟ-ପୂର୍ଣ୍ଣ ହୃଦୟରେ ମାଛଟିକୁ ଧରି ଏକ ଘନ ଅରଣ୍ୟକୁ ଗମନ କଲା । ଅରଣ୍ୟ ମଧ୍ୟରେ ଗୋଟିଏ ନିର୍ଝରର ସନ୍ଧାନ କରି ସେଠାରେ ସେ ଗୋଟିଏ କୁଣ୍ଡ ନିର୍ମାଣପୂର୍ବକ କୁଣ୍ଡଟିକୁ ଜଳପୂର୍ଣ୍ଣ କଲା ଓ ସେହି ଜଳପୂର୍ଣ୍ଣ କୁଣ୍ଡରେ ମାଛଟିକୁ ଛାଡ଼ିଦେଲା । କୁଣ୍ଡ ନିକଟରେ ଦୃଢ଼ାସନରେ ବସି ସେ ଚିନ୍ତାକଲା—"ହେ ପ୍ରଭୁ ଜଗନ୍ନାଥ ! ତୁମର ଲୀଳା ବିଚିତ୍ର । ମାଛ କେଉଁକାଳେ ମଣିଷ ଭାଷାରେ କଥା କହିବ, ମୁଁ କେବେ ଶୁଣି ନ ଥିଲି । ତେଣୁ ତୁମେ ଯେ ମତ୍ସ୍ୟାବତାରରେ ମୋ ନିକଟରେ ଆବିର୍ଭୂତ ହୋଇଛ, ଏଥିରେ କୌଣସି ସନ୍ଦେହ ନାହିଁ । ପ୍ରକୃତରେ ତୁମେ ଯଦି ମତ୍ସ୍ୟାବତାର, ତେବେ ଯୋଗିଜନ-ବାଞ୍ଛିତ ତୁମର ସେହି ମନମୋହନ ରୂପରେ ମୋତେ ଦର୍ଶନ ଦିଅ ପ୍ରଭୁ ! ତୁମର ଦର୍ଶନ ଲାଭକଲେ, ମୋର ସମସ୍ତ ଦୁଃଖ ଦୂର ହୋଇଯିବ । ତୁମେ ଯଦି ନିଷ୍ଠୁର ହୋଇ ମୋତେ ଦର୍ଶନ ନ ଦେବ, ତେବେ ଏହିଠାରେ ବସି ବସି ମୁଁ ପ୍ରାଣତ୍ୟାଗ କରିବ ।"

ଜଗନ୍ନାଥଙ୍କୁ ଏହିପରି ପ୍ରାର୍ଥନା କରି ରଘୁ କେହେରା ସେହିଠାରେ ବସିରହିଲା । ହୃଦୟପଟରେ ଜଗନ୍ନାଥଙ୍କର ମୂର୍ତ୍ତି ସ୍ଥାପନା କରି ଏବଂ ମୁଖରେ ଅବିରତ ହରିନାମ କୀର୍ତ୍ତନ କରି ସେ ଧ୍ୟାନମଗ୍ନ ହେଲା । ତାର ମନ ବାହ୍ୟଜଗତରୁ ମୁକ୍ତହୋଇ ପରମାନନ୍ଦ ସ୍ୱରୂପ ଜଗନ୍ନାଥଙ୍କ ପାଦପଦ୍ମରେ ନିବିଷ୍ଟ ହେଲା ।

ଭକ୍ତପ୍ରିୟ ଜଗନ୍ନାଥ ଭକ୍ତର ଦୁଃଖ ଦୂର କରିବା ପାଇଁ ସର୍ବଦା ଜାଗ୍ରତ ଅବସ୍ଥାରେ ଥାନ୍ତି । ସେଥିପାଇଁ ସେ ଭକ୍ତର ଭଗବାନ, ଭକ୍ତର ବାଞ୍ଛା କଳ୍ପତରୁ । ରଘୁ ଦେହେରୀ ପରି ସରଳ-ବିଶ୍ୱାସୀ ଭକ୍ତର ଡାକ ସେ ନ ଶୁଣନ୍ତେ କିପରି ? ଦିନେ ନୁହେଁ କି ଦୁଇଦିନ ନୁହେଁ, ଏକାଦିକ୍ରମେ ତିନିଦିନ ଧରି ରଘୁ ଦେହେରୀ କ୍ଷୁଧା, ତୃଷା ଭୁଲି ଘନ ଅରଣ୍ୟର ସେହି ବର୍ଟର ନିକଟରେ ଧ୍ୟାନ ମଗ୍ନ ହୋଇଛି । ତାହା କରୁଣାମୟ ଜଗନ୍ନାଥଙ୍କର ଅସହ୍ୟ ହେଲା । ସେ ବିପ୍ରଦେହ ଧାରଣ କରି ରଘୁ ଦେହେରୀ ସମ୍ମୁଖରେ ଆବିର୍ଭୂତ ହେଲେ ।

ଭଗବାନଙ୍କର କରସ୍ପର୍ଶରେ ରଘୁ ଦେହେରୀ ଚକ୍ଷୁ ଖୋଲି ଦେଖିଲା, ତା ସମ୍ମୁଖରେ ଜଣେ ବିପ୍ର ଛିଡ଼ା ହୋଇଛନ୍ତି । ସେ କିଛି କହିବା ପୂର୍ବରୁ ବିପ୍ରରୂପୀ ଭଗବାନ ପଚାରିଲେ—"ତୁମେ କିଏ ? ଏହି ଜନମାନବହୀନ ଅରଣ୍ୟରେ ତୁମେ ଏକାକୀ କାହିଁକି ବସିଅଛ ? ତୁମର କ'ଣ କେହି ନାହାନ୍ତି ?"

ରଘୁ ଦେହେରୀ ଉତ୍ତର ଦେଲା—

"ହେ ବିପ୍ର କି ମୋତେ ପଚାର । ଜାତିରେ ଅଟେ ମୁଁ ଧୀବର ।
କୁଟୁମ୍ବ ଜଞ୍ଜାଳ ନିମନ୍ତେ । ପେଲଣା ଜାଲ ଧରି ହସ୍ତେ ।
ଅଇଲି ମୀନ ମାରିବାରେ । ପ୍ରବେଶ ହେଲି ସରୋବରେ ।
ଜାଲ ପକାନ୍ତେ ଜଳେ ପଶି । ପଡ଼ିଲା ରୋହିମାଛ ଆସି ।
ସେ ମୀନ ପକାଇଣ କୂଳେ । ଧରି ମୁଁ ମାରିବାର ବେଳେ ।
ସେ ମାଛ ପାଟି ବିସ୍ତାରିଣ । ଡାକିଲା ରଖ ନାରାୟଣ ।
ଶୁଣି ମୁଁ ଆଚମ୍ବିତ ହୋଇ । ମୀନକୁ ଧରି ଅଇଲଇଁ ।
ଏ ଘୋର ବନସ୍ତରେ ପଶି । ମୀନକୁ ଜଗି ଅଛି ବସି ।

ଯେ ନାମ ଶୁଣାଇଲ୍ ମୋତେ । ତାହାକୁ ଦେଖିବା ନିମନ୍ତେ ।
ତେବେ ମୁଁ ନିଜପୁରେ ଯିବ । ନୋହିଲେ ଜୀବନ୍ ହାରିବ ।
ଏ କଥା ମୋର ସତ୍ୟବ୍ରତ । ତେଣୁ ମୁଁ ଅଛିଅଛି ଏଥ ।
କହିଲ ମନର ବେଦନା । ହେ ବିପ୍ର ବିବେକ କର ଜନା ।

(ଦାର୍ଢ୍ୟତା ଭକ୍ତି)

ରଘୁ ବେହେରା ନିଜ ମନର କଥା କହିସାରି ପୁଣି କହିଲା— "ହେ ବିପ୍ର ! ଆପଣଙ୍କର ଉପସ୍ଥିତିରେ ମୋ ଭଜନରେ ବାଧା ସୃଷ୍ଟି ହେଉଛି । ତେଣୁ ଦୟାପୂର୍ବକ ଆପଣ ନିଜର ଗନ୍ତବ୍ୟ ପଥରେ ଗତି କଲେ ମୁଁ ମୋ ଭଜନରେ ମନୋନିବେଶ କରିବି ।"

ବିପ୍ରରୂପୀ ଭଗବାନ ଭକ୍ତର ଦୃଢ଼ନିଷ୍ଠା ପରୀକ୍ଷା କରିବା ପାଇଁ ପୁଣି କହିଲେ—"ହେ ଧୀବର ! ତୁମେ ଯେଉଁ କଥା କହୁଛ, ତାହା ମୋତେ ଆଶ୍ଚର୍ଯ୍ୟ ଲାଗୁଛି । ସାଧାରଣ ମୀନ କ'ଣ କେବେ ମନୁଷ୍ୟ-ଭାଷାରେ କଥା କହିପାରେ ? ତୁମେ ଭୁଲ ଶୁଣି ନାହିଁ ତ ? ଯଦି ତୁମେ ନିଶ୍ଚିତ ଭାବରେ ମୀନମୁଖରୁ ମନୁଷ୍ୟ-ଭାଷା ଶୁଣିଛ, ତେବେ ତାହା ନିଶ୍ଚୟ ନିଯ୍ୟତିର କାରାମତି । ତୁମେ ଯେତେ ଦୃଢ଼ଚିତ୍ତରେ ଭଜନ କଲେ ମଧ୍ୟ କେବେ ହେଲେ ନିଯ୍ୟତିର ଦର୍ଶନ ପାଇବନାହିଁ । ଅଯଥା ଦୁଃଖ କଷ୍ଟରେ ରହି ଶେଷରେ ମୃତ୍ୟୁ ମୁଖରେ ପଡ଼ିବ ସିନା ! ତେଣୁ ବୃଥା ଚେଷ୍ଟା ନ କରି ତୁମେ ନିଜ ଗୃହକୁ ଫେରିଯାଅ ।"

ରଘୁ ବେହେରା ଏପରି କଥାରେ ବିଚଳିତ ନ ହୋଇ କହିଲା—

" × × × । ଭଲ କହିଲୁ ବିପ୍ର ତୁ ତ ।
ସେ ସିନା ଦେଖାଦେବା ଦୂର । ମୋର ମନୋବାଞ୍ଛି ନିକର ।
ଏଥକୁ ଭୟ ନାହିଁ କରୁ । ପ୍ରାଣ ମୁଁ ମୁରୁଛି ରହିଛି ।

କେବଳ ପନବନ୍ଧୁ ନାମ । ବହି ଅଛନ୍ତି ସାକ୍ଷୀବ୍ରହ୍ମ ।
ପତିତ ରକ୍ଷଣ ନିମନ୍ତେ । ବେଦଭଳେ ବ ନ୍ଧିଛନ୍ତି ନେତେ ।
ଭୃତ୍ୟ ଆରତ ନିବାରଣେ । ଶ୍ରୀଭୁଜେ ଚକ୍ର ଅନୁକ୍ଷଣେ ।
ଧରି ବଳସ୍ତୁ ଦାରୁ ହରି । ଏଣୁ ଭରସା ଅଛୁ କରି ।
ଅବଶ୍ୟ ଦେଖାଦେବେ ଥରେ । ବିଶ୍ବାସ ଅଛୁ ମୋ ମନରେ ।
ନୋହିଲେ ପ୍ରାଣ ମୋର ଯାଉ । ତାର କୀରତି ରହିଥାଉ ।
ଏବେ ହେ ଶୁଣ ବିପ୍ରବର । ତୁମ୍ଭଙ୍କୁ କୋଟି ନମସ୍କାର ।
କଲ୍ୟାଣ କରି ମୋତେ ଚଳ । ଭଜନ ହେଉଅଛୁ ହେଳ ।”

(ପାର୍ଥିତା ଭକ୍ତି)

ଭକ୍ତର ଦୃଢ଼-ସଂକଳ୍ପ ଏବଂ ଏକନିଷ୍ଠ ଭକ୍ତିରେ ସନ୍ତୁଷ୍ଟ ହୋଇ ଭକ୍ତ ବତ୍ସଳ ଜଗନ୍ନାଥ ଅମୃତ-ବାକ୍ୟରେ କହିଲେ—“ହେ ମୋର ପ୍ରିୟ ଭକ୍ତ ! ତୁମର ମନୋବାଞ୍ଛା ପୂରଣ କରିବାପାଇଁ ମୁଁ ତୁମ ନିକଟରେ ମୀନାବତାରରେ ଆବିର୍ଭୂତ ହୋଇଥିଲି । ମୁଁ ହିଁ ତୁମର ଆରଧ ଦେବତା ଜଗନ୍ନାଥ । ତୁମର ସରଳ ଭକ୍ତି ମୋ ହୃଦୟକୁ ଦ୍ରବୀଭୂତ କରିଛି । ମୋଠାରୁ ମନଇଚ୍ଛା ବର ମାଗି ତୁମେ ଏବେ ସ୍ବଗୃହକୁ ଫେରିଯାଅ ।”

ରଘୁ ବେହେରା ଯାହାଙ୍କୁ ସାଧାରଣ ବିପ୍ର ବୋଲି ମନେ କରିଥିଲା, ସେ ଯେ ସ୍ବୟଂ ଜଗନ୍ନାଥ, ଏ କଥା ସେ ବିଶ୍ବାସ କରିବ କିପରି ? ଅନନ୍ୟୋପାୟ ହୋଇ ସେ ପୁଣି ଉତ୍ତରିଦେଲା—“ହେ ପ୍ରଭୁ ! ମୁଁ ଆପଣଙ୍କୁ ଚିହ୍ନିବାରେ ଭୁଲ କରିଛି । ମୋର ଅପରାଧ କ୍ଷମାକରନ୍ତୁ । ମୁଁ ଯେ ସାଧାରଣ ମନୁଷ୍ୟ, ପୁଣି ମୂର୍ଖ ! ଆପଣ ନିଜ ସ୍ବରୂପରେ ପ୍ରକଟିତ ନ ହେଲେ ମୁଁ କିପରି ଆପଣଙ୍କୁ ବିଶ୍ବାସ କରିବି ? କୃପାକରି ଆପଣ ଥରେ ସେହି ମନମୋହନ ରୂପ ଦର୍ଶନ

କରନ୍ତୁ ପ୍ରଭୁ ! ଆପଣଙ୍କର ମନମୋହନ ରୂପ ଦର୍ଶନ କରି ମୋର ଚର୍ମନେତ୍ର ପବିତ୍ର ହେଉ, ମୋର ଜନ୍ମ ସାର୍ଥକ ହେଉ ।”

ଭକ୍ତର ମନୋବାଞ୍ଛା ପୂରଣକରି ଭଗବାନ ତାଙ୍କର ସୁଦୁର୍ଲ୍ଲଭ ମନମୋହନ ରୂପରେ ପ୍ରକଟିତ ହେଲେ । ଚତୁର୍ଭୁଜରେ ଶଙ୍ଖ, ଚକ୍ର, ଗଦା, ପଦ୍ମ, କଟିଦେଶରେ ପୀତ ବସନ, ପାଦରେ ନୂପୁର, ବକ୍ଷରେ କୌସ୍ତୁଭ ହାର, କର୍ଣ୍ଣରେ କୁଣ୍ଡଳ ଏବଂ ମସ୍ତକରେ କିରୀଟ ତାଙ୍କର ନୀଳ-କଳେବରକୁ ଅପୂର୍ବ ସୌନ୍ଦର୍ଯ୍ୟରେ ମଣ୍ଡନ କରୁଥିଲା । ଭକ୍ତ ରଘୁ କେହେର ଭଗବାନଙ୍କର ଦିବ୍ୟରୂପ ଦର୍ଶନ କରି ତାଙ୍କର ପାଦପଦ୍ମରେ ଲୋଟିପଡ଼ିଲା । ଭଗବାନ ଭକ୍ତକୁ ଦୁଇ ହାତରେ ତୋଳି ଧରି ତାକୁ ଅମିୟ ଆନନ୍ଦ ପ୍ରଦାନ କଲେ । ଦୁଇ ନେତ୍ରରୁ ଆନନ୍ଦାଶ୍ରୁ ଝରଇ ଭକ୍ତ କହିଲା—“ହେ ପ୍ରଭୁ ! କୋଟି-ଜନ୍ମର ପୁଣ୍ୟଫଳରେ ମୁଁ ଆପଣଙ୍କର ଦର୍ଶନ ଲାଭକରିଛି । ଆପଣଙ୍କର ଦିବ୍ୟ ଦର୍ଶନ ଫଳରେ ମୋର ସମସ୍ତ କାମନା ପୂର୍ଣ୍ଣ ହୋଇଛି । ମୁଁ ଆପଣଙ୍କ ନିକଟରେ ଆଉ କି ବର ମାଗିବି ପ୍ରଭୁ ?”

ଭଗବାନ କହିଲେ—“ଭକ୍ତ ହିଁ ମୋର ଜୀବନ ! ଭକ୍ତ ହିଁ ମୋର ପ୍ରାଣ !! ଭକ୍ତର ମନୋବାଞ୍ଛା ପୂରଣ କରିବା ପାଇଁ ମୁଁ ସର୍ବଦା ତତ୍ପର । ତେଣୁ ତୁମେ ବିନା ସଙ୍କୋଚରେ ତୁମର ଅଭିଳାଷ ବ୍ୟକ୍ତ କରି ମୋର କୃପା ଲାଭକର ।”

ଭଗବାନଙ୍କର ମଧୁର ବାକ୍ୟରେ ମୁଗ୍ଧ ହୋଇ ରଘୁ କେହେର କହିଲା—“ହେ ପ୍ରଭୁ ! ମୋ ପ୍ରତି ଏତିକି କରୁଣା କରନ୍ତୁ, ଯେପରି ଧୀବର ସ୍ୱଭାବ ନେଇ ମୋତେ ଆଉ ମାଛ ମାରିବାକୁ ନ ପଡ଼େ । ମୋର ମନ, ପ୍ରାଣ, ଜୀବନ ଆପଣଙ୍କର ପାଦପଦ୍ମରେ

ଅର୍ପିତ ହୋଇଛୁ । ଆଜୀବନ ଆପଣଙ୍କର କୃପା ମୋ ଉପରେ ବର୍ଷିତ ହେଉ, ତାହା ହିଁ ମୋର ଏକାନ୍ତ ଅଭିଳାଷ ।”

ଭଗବାନ ଭକ୍ତର ମନୋବାଞ୍ଛା ପୂରଣକରି ତତ୍‌କ୍ଷଣାତ୍ ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

ଭଗବତ୍ କୃପା ଲାଭକରି ଏବଂ ମୁଖରେ ଅବିରତ ହରିନାମ କୀର୍ତ୍ତନ କରି ରଘୁ ବେହେରା ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲା । ତାହାର ମାତା ଓ ପତ୍ନୀ ତାକୁ ଦିନନ୍ଦିନ ହେଲା ନ ଦେଖି ବଡ଼ ବ୍ୟସ୍ତ ହୋଇ ପଡ଼ିଥିଲେ । ହଠାତ୍ ରଘୁ ବେହେରାକୁ ଦେଖି ସେମାନେ ଆନନ୍ଦରେ ବିହ୍ୱଳ ହୋଇପଡ଼ିଲେ ଏବଂ ତାକୁ ଗୃହକୁ ନେଇ ଘରେ ଯାହା ଥିଲା ତାହା ଖାଇବାକୁ ଦେଲେ । ରଘୁ ବେହେରା ଭୋଜନକରି ବିଶ୍ରାମ ନେଲା ।

ଏଥର ରଘୁ ବେହେରାର ଜୀବନ ସ୍ରୋତ ଭିନ୍ନ ପଥରେ ଗତି କରିବାକୁ ଲାଗିଲା । ସେ ଆଉ ମାଛ ମାରିବାକୁ ନ ଯାଇ ଅବିରତ ହରିନାମ କୀର୍ତ୍ତନ କରିବାରେ ମନୋନିବେଶ କଲା । ହରିନାମ ଗାଇ ସେ ଯେତେବେଳେ ଗ୍ରାମଦାଣ୍ଡରେ ଗତି କରୁଥିଲା, ଲୋକମାନେ ତା’ ମୁଖରୁ ହରିନାମ ଶୁଣି ତାକୁ ପ୍ରଚୁର ପରିମାଣରେ ଭିକ୍ଷା ପ୍ରଦାନ କରୁଥିଲେ । ଫଳରେ ତା ପରିବାରରେ ଆଉ କ୍ଷୁଧା କଷ୍ଟ ରହିଲା ନାହିଁ ।

ଭକ୍ତ ଯେତେବେଳେ ଭକ୍ତିରେ ଉନ୍ମତ୍ତ ହୋଇଉଠେ, ତାର ଲୌକିକ ଆଚାର ବିଚାରର ଜ୍ଞାନ ରହେନାହିଁ । ସେତେବେଳେ ଲୋକମାନେ ତାକୁ ପାଗଳ ବୋଲି ମନେକରନ୍ତି । ଶାସ୍ତ୍ରରେ ଅଛି—

ଯଜ୍ଜ୍ଞାତ୍ୱା ମତ୍ତୋ ଭବତି ସ୍ତବ୍‌ଧୋ ଭବତି ଆତ୍ମାରାମୋ ଭବତି ।”

(ନାରଦ-ଭକ୍ତି-ସୂତ୍ର)

ଅର୍ଥାତ୍ ଭକ୍ତିକୁ ଉତ୍ତମରୂପେ ଜାଣିପାରିଲେ ମନୁଷ୍ୟ ଉନ୍ମତ୍ତ ହୋଇଯାଏ, ସ୍ତବ୍‌ଧ ହୋଇଯାଏ, ଆତ୍ମାରାମ ହୋଇଯାଏ ।

ରଘୁ କେହେରାର ଅବସ୍ଥା ମଧ୍ୟ ସେଇଆ ହୋଇଥିଲା । ଲୋକମାନେ ତାକୁ ପାଗଳ ବୋଲି ମନେକରି ଧୀରେ ଧୀରେ ଥଟ୍ଟା ତାମସା କରିବାକୁ ଲଗିଲେ ।

ଥରେ ରଘୁ କେହେରା ଗ୍ରାମ ମଣ୍ଡପରେ ବସିଥିଲା । ଗ୍ରାମର ପିଲାମାନେ ତାକୁ ଦେଖି ଘେରିଗଲେ ଏବଂ ଥଟ୍ଟା ତାମସା କରିବାକୁ ଲାଗିଲେ । କିଏ ଲୁଗା ଭିଡ଼ିଲା ତ କିଏ ଚୁଟି ଭିଡ଼ିଲା, କିଏ ଧୂଳି ଫିଙ୍ଗିଲା ତ କିଏ ମାଟି ଫିଙ୍ଗିଲା । ଏହିପରି ନାନା ଭାବରେ ହଇରାଣ କରିବାରୁ ରଘୁ କେହେରା ସେଠାରୁ ଉଠି ନିଜ ଗୃହ ଅଭିମୁଖରେ ଗମନ କଲା । ଏହି ସମୟରେ ଜଣେ ପିଲା ଲୁହାକଣ୍ଟା ଲାଗିଥିବା ଗୋଟିଏ ବାଡ଼ିରେ ରଘୁ କେହେରାର ଜଙ୍ଘ ଚିରି ପକାଇଲା । ଜଙ୍ଘରୁ ଧାର ଧାର ରକ୍ତ ଝରି ରଘୁ କେହେରାର ଲୁଗା ରକ୍ତାକ୍ତ ହୋଇଗଲା । ରଘୁ କେହେରା ଏଥିରେ ସାମାନ୍ୟ ବିଚଳିତ ହୋଇ କହି ପକାଇଲା—“ରେ ବାଳକ ! ତୋର କିଛି ଦୋଷ ନ କରି ଥିଲେ ମଧ୍ୟ ତୁ ମୋତେ ଯେଉଁ ଦଣ୍ଡ ଦେଲୁ, ଭଗବାନ ତୋତେ ଅନୁରୂପ ଦଣ୍ଡ ପ୍ରଦାନ କରନ୍ତୁ ।”

ଭକ୍ତର କଥା କେବେହେଲେ ଅନ୍ୟଥା ହୁଏ ନାହିଁ । ରଘୁ କେହେରା ତାହାପରେ ଗୃହକୁ ଫେରିଆସିଲା ସିନା; କିନ୍ତୁ ସେହି

ବାଳକଟି ଆଉ ଗୃହକୁ ଫେରିପାରିଲା ନାହିଁ । ସେ ସେହିଠାରେ ହଠାତ୍ ପଡ଼ିଗଲା ଏବଂ ତାର ପ୍ରାଣବାୟୁ ସଙ୍ଗେ ସଙ୍ଗେ ଉଡ଼ିଗଲା ।

ବିଦ୍ୟୁତ୍ ବେଗରେ ଏହି କଥା ଗ୍ରାମସାରା ବ୍ୟାପ୍ତ ହୋଇଗଲା । ବାଳକଟିର ପିତାମାତା ଏହି ସମ୍ବାଦ ଶୁଣି ମର୍ମାହତ ହୋଇ ପଡ଼ିଲେ ଏବଂ ବାଳକଟିକୁ ଧରି, କ୍ରନ୍ଦନ କରିକରି ରଘୁ ବେହେରା ନିକଟରେ ଉପସ୍ଥିତ ହେଲେ । ସେମାନେ ବାଳକଟିକୁ ରଘୁ ବେହେରା ପାଦତଳେ ଶୁଆଇ ଦେଇ କାନ୍ଦିବାକୁ ଲାଗିଲେ ଏବଂ ବାଳକଟିର ଦୋଷ କ୍ଷମାକରି ତାକୁ ବଞ୍ଚାଇଦେବାକୁ ବାରମ୍ବାର ଅନୁରୋଧ କଲେ । ରଘୁ ବେହେରା କହିଲା—"ମୋର କିଛି ଦୋଷ ନାହିଁ । ମଧ୍ୟ ପିଲାଟି ମୋତେ ଯେଉଁ ଦଣ୍ଡ ଦେଲା, ତାହାର ଫଳ ସ୍ୱରୂପ ଭଗବାନ ତାକୁ ଉଚିତ ଦଣ୍ଡ ଦେଇଛନ୍ତି । ଭଗବାନ ଯଦି କୃପା କରିବେ, ତେବେ ପିଲାଟି ପୁଣି ବଞ୍ଚିବ; ମୁଁ କପରି ତାକୁ ବଞ୍ଚାଇବି ?

ବାଳକଟିର ପିତାମାତା ତଥାପି ରଘୁ ବେହେରାକୁ ଛାଡ଼ିଲେ ନାହିଁ । ପିତାମାତାଙ୍କର ଆକୁଳତା ଦେଖି ରଘୁ ବେହେରା ପ୍ରାର୍ଥନା କରି କହିଲା—"ହେ ଜଗନ୍ନାଥ ! କୃପା କରି ଆପଣ ଏହି ବାଳକଟିକୁ ବଞ୍ଚାଇ ଦିଅନ୍ତୁ; ଆପଣଙ୍କର କୀର୍ତ୍ତି ସାରା ଜଗତରେ ପ୍ରଚାରିତ ହେଉ ।"

ଏହା କହିବାମାତ୍ରେ ବାଳକଟି ହଠାତ୍ ପ୍ରାଣଲାଭ କରି ଉଠି-ବସିଲା । ଗ୍ରାମର ଯେତେ ଲୋକ ସେଠାରେ ରୁଣ୍ଡ ହୋଇଥିଲେ, ସମସ୍ତେ ଏହି ଦୃଶ୍ୟ ଦେଖି ସ୍ତମ୍ଭିତ ହୋଇଗଲେ ଏବଂ ରଘୁ ବେହେରା ଯେ ଜଣେ ମହାନ୍ ଭକ୍ତ, ତାହା ଉପଲବ୍ଧି କରି ପାରିଲେ ।

ତାହାପରେ ରଘୁ ବେହେରାର କୀର୍ତ୍ତି ପୁରପଲ୍ଲୀରେ ବ୍ୟାପିବାକୁ ଲାଗିଲା । ଦୂର-ଦୂରାନ୍ତରର ଲୋକମାନେ ମଧ୍ୟ ତାହାର ଅଦ୍ଭୁତ ଭକ୍ତି ବିଷୟରେ ଅବଗତ ହୋଇ ଧନ୍ୟ ଧନ୍ୟ କଲେ ।

ଦିନକର ଘଟଣା । ସେଦିନ ରଘୁ ବେହେରା କିଛି ଉତ୍ତମ ଖାଦ୍ୟ ପ୍ରସ୍ତୁତ କରି ଜଗନ୍ନାଥଙ୍କୁ ଅର୍ପଣ କରିବା ନିମିତ୍ତ ଆବାହନ କରିବାକୁ ଲାଗିଲା । ଭକ୍ତ ପ୍ରିୟ ଜଗନ୍ନାଥ ତତ୍‌କ୍ଷଣାତ୍ ଭକ୍ତ ସମ୍ମୁଖରେ ଉପସ୍ଥିତ ହେଲେ । ନିଜର ପ୍ରାଣପ୍ରିୟ ଠାକୁରଙ୍କୁ ଆଖି ଆଗରେ ଦେଖି ରଘୁ ବେହେରା କୃତକୃତ୍ୟ ହେଲା ଏବଂ ପ୍ରଭୁଙ୍କୁ ବସିବା ପାଇଁ ଦିବ୍ୟାସନ ପ୍ରଦାନ କଲା । ଜଗନ୍ନାଥ ଆସନ ଗ୍ରହଣ କରି ଭକ୍ତ ପ୍ରଦତ୍ତ ଖାଦ୍ୟ ଭୋଜନ କଲେ ।

ଏଣେ ସେହି ସମୟରେ ଶ୍ରୀମନ୍ଦିରରେ ଏକ ବ୍ୟାଘାତ ଉପସ୍ଥିତ ହେଲା । ସେବକମାନେ ବିଭିନ୍ନ ପ୍ରକାର ବ୍ୟଞ୍ଜନ ରନ୍ଧନ କରି ଭୋଗ ମଣ୍ଡପରେ ସ୍ଥାପନ କଲେ; କିନ୍ତୁ ପଣ୍ଡାମାନେ ଯେତେବେଳେ ପ୍ରଭୁଙ୍କୁ ନୈବେଦ୍ୟ ଅର୍ପଣ କଲେ, ସେତେବେଳେ ଜଗନ୍ନାଥ ଆଉ ଚକ୍ଷୁରେ ଦର୍ଶନ ଦେଲେନାହିଁ । ଫଳରେ ଜଗନ୍ନାଥଙ୍କର ମଣୋହି ହେବା ଅସମ୍ଭବ ହୋଇପଡ଼ିଲା । ଜଗନ୍ନାଥଙ୍କର ଭୋଗ ମହାପ୍ରସାଦ ହୋଇ ନ ପାରିଲେ ତାହା ସବୁ ଭୂମିତଳେ ପୋତା ହେବାର ବିଧି ବହୁ ପୂର୍ବକାଳରୁ ରହିଆସିଛି । ସେହି ବିଧି ଅନୁସାରେ ସମସ୍ତ ଭୋଗ ଭୂମିତଳେ ପୋତ ହେଲା ।

ସେହିଦିନଠାରୁ ପ୍ରତିଦିନ ରଘୁ ବେହେରା ଗୃହରେ ଜଗନ୍ନାଥ ଭୋଜନ ଗ୍ରହଣ କଲେ; ତେଣୁ ଶ୍ରୀମନ୍ଦିରରେ ଆଉ ମହାପ୍ରସାଦ ଉଠିପାରିଲା ନାହିଁ । କ୍ରମାଗତ ଭାବରେ ଏହିପରି ଚାଲିବାରୁ ପଣ୍ଡା ଓ ସେବକମାନଙ୍କର ଚଳେଣି ପଡ଼ିଲା । ତତ୍‌କାଳୀନ ପୁରୀର ଗଜପତି

ମହାରାଜା ମଧ୍ୟ ଏହି ସମ୍ବାଦ ଶୁଣି ବିଚଳିତ ହୋଇପଡ଼ିଲେ । ଶେଷରେ ଅନନ୍ୟୋପାୟ ହୋଇ ଗଜପତି ମହାରାଜା କୁଶାସନ କରି ଗରୁଡ଼ ପଟ୍ଟରେ ଧାରଣା ଦେଲେ ।

ଜଗନ୍ନାଥଙ୍କର କୃପା ରାଜାଙ୍କ ଉପରେ ବର୍ଷିତ ହେଲା । ରାତ୍ରେ ସ୍ୱପ୍ନରେ ରାଜା ଜଗନ୍ନାଥଙ୍କର ଦର୍ଶନ ପାଇଲେ । ରାଜାଙ୍କୁ ଦର୍ଶନ ଦେଇ ଜଗନ୍ନାଥ କହିଲେ—

"× × ଶୁଣହେ ରାଜନ । କମ୍ପା ତୁ କରୁ ଦୁଃଖ ମନ ।
ଆମ୍ଭେ ଯେ ପିପିଲି ଗ୍ରାମରେ । ଧୀବର ରଘୁଦାସ ଘରେ ।
ଭୋଜନ କରୁଅଛୁ ବସି । ତେଣୁଟି ଚକ୍ଷୁରେ ନ ଦିଶି ।
ଭକତ ଗୁଣ୍ଡିଚେବ ଯେବେ । ଏହି ମଣୋହି ହେବ ତେବେ ।
ମୂଳ ଟମା ଭକତର ଭାବ । ଏ ଦ୍ରବ୍ୟ ମୋର କିସ ହେବ ।
ଭକତ ଯେଣୁ ମାତ୍ର ଦେଲେ । ତାହା ମୁଁ ମଣେ ମେରୁ ତୁଲେ ।
ଭାବରୁ ଥାଇ ଯେ ଭୋଜନ । ସେ ମେରୁ ତୁଲେ ଦେବା ଧନ ।
ସେ ମୋତେ ଅଟଇ କଣ୍ଟିତ । ଶ୍ରଦ୍ଧାନ ଥାଇ ଯାର ଚିତ୍ତ ।
ତେଣୁଟି କହୁଅଛୁ ତୋତେ । ଯାଇ ପିପିଲି ଦରଶନ୍ତେ ।
ମୋର ଦାସକୁ ଦେନ ଆସ । ହୋଇ ତୁ କ୍ଷେତ୍ରବରେ ବାସ ।
ତେବେ ମୁଁ କରିବି ଭୋଜନ । × × ×"

(ଦାର୍ଢ୍ୟତା ଭକ୍ତି)

ସ୍ୱପ୍ନରେ ଜଗନ୍ନାଥଙ୍କର ଦର୍ଶନ ପାଇ ରାଜା ନିଜକୁ ଧନ୍ୟ-ମନେକଲେ । ତତ୍ପରଦିନ ପ୍ରଭାତରେ ସେ ଶଯ୍ୟା ତ୍ୟାଗକରି ନିତ୍ୟକର୍ମ ସମାପ୍ତ କଲେ ଏବଂ ଅଶ୍ୱ ଆରୋହଣ କରି ପିପିଲିରେ ଯାଇ ଉପସ୍ଥିତ ହେଲେ । ରଘୁ ବେହେରାର ଘର ସନ୍ଧାନକରି ସେ ଦ୍ୱାର-ଦେଶରେ ଥାଇ ରଘୁ ବେହେରାକୁ ଡାକିବାକୁ ଲଗିଲେ; ମାତ୍ର

ସେହି ସମୟରେ ରଘୁ ଦେହେରୀ ଜଗନ୍ନାଥଙ୍କୁ ଭୋଜନ ପ୍ରଦାନ କରୁଥିଲା । ତେଣୁ ସେ ରାଜାଙ୍କର ଡାକ ଶୁଣିପାରିଲା ନାହିଁ । ରାଜା ବହୁକ୍ଷଣ ଧରି ଡାକିବାପରେ କୌଣସି ଉତ୍ତର ନ ପାଇ ହଠାତ୍ ଗୃହ ମଧ୍ୟରେ ପ୍ରବେଶ କଲେ । ସଙ୍ଗେ ସଙ୍ଗେ ପ୍ରଭୁ ଜଗନ୍ନାଥ ଭୋଜନରୁ ବିରତ ହୋଇ ଅନ୍ତର୍ଦ୍ଧାନ ହୋଇଗଲେ । ପ୍ରଭୁଙ୍କର ଅଦର୍ଶନରେ ରଘୁ ଦେହେରୀ ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଲା ଏବଂ କ୍ରନ୍ଦନ କରି କରି ଭୂପତିତ ହେଲା । ମହାରାଜା ତାଙ୍କୁ ଭୂମିରୁ ତୋଳି ଧରି ଆଲିଙ୍ଗନ କଲେ । ତାହାପରେ ମହାରାଜା ତାଙ୍କୁ ଜଗନ୍ନାଥଙ୍କର ସ୍ୱପ୍ନାଦେଶ ଶୁଣାଇଲେ ଏବଂ ତା' ପରିବାର ସହିତ ତାଙ୍କୁ ଶ୍ରୀକ୍ଷେତ୍ରକୁ ନେଇ ଆସିଲେ ।

ରାଜାଙ୍କର ନିର୍ଦ୍ଦେଶରେ ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଏକ ସୁନ୍ଦର ଗୃହ ନିର୍ମିତ ହେଲା । ରାଜା ସେହି ଗୃହ ରଘୁ ଦେହେରୀ ଓ ତା' ପରିବାରକୁ ଅର୍ପଣ କରି ସେଠାରେ ସେମାନଙ୍କ ପାଇଁ ଖାଦ୍ୟ ବସ୍ତ୍ରର ସୁବନ୍ଦୋବସ୍ତ କରିଦେଲେ । ସେହିଦିନଠାରୁ ରଘୁ ଦେହେରୀ ଶ୍ରୀକ୍ଷେତ୍ରରେ ଅବସ୍ଥାନ କରି ପ୍ରତ୍ୟହ ଜଗନ୍ନାଥ ଦର୍ଶନ ଓ ନାମ-କୀର୍ତ୍ତନରେ ମନୋନିବେଶ କଲା ।

ପ୍ରେମମୟ ଜଗନ୍ନାଥ ପ୍ରେମୀ ଭକ୍ତର ପ୍ରେମରେ ବଶ ହୋଇ ତାକୁ ନିଜର ଅମୃତମୟ କୋଳକୁ ଟାଣି ନିଅନ୍ତି । ଜାତି, କୁଳ ବର୍ଣ୍ଣକୁ ଉପେକ୍ଷା କରି ସେ କେବଳ ଭକ୍ତର ଭକ୍ତିରେ ହିଁ ସନ୍ତୁଷ୍ଟ ହୁଅନ୍ତି । ଧୀବର କୁଳରେ ଜାତ ରଘୁ ଦେହେରୀକୁ କରୁଣା କରି ସେ ଯେଉଁ କୀର୍ତ୍ତି ରଖି ଯାଇଛନ୍ତି, ତାହା ଯେପରି ଆନନ୍ଦଦାୟକ, ସେହିପରି ଚିରସ୍ମରଣୀୟ !



# ମାଧବ ଦାସ ଓ ଶ୍ରୀଜଗନ୍ନାଥ

"ମଯ୍ୟାବେଶ୍ୟ ମନୋ ଯେ ମାଂ ନିତ୍ୟଯୁକ୍ତା ଉପାସତେ
ଶ୍ରଦ୍ଧୟା ପରୟୋପେତା ସ୍ତେ ମେ ଯୁକ୍ତତମା ମତାଃ ।"
(ଶ୍ରୀମଦ୍ଭଗବଦ୍‌ଗୀତା ; ୧୨ । ୨)

ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହୁଛନ୍ତି—"ହେ ଅର୍ଜ୍ଜୁନ ! ଯେଉଁମାନେ ଶ୍ରଦ୍ଧାଯୁକ୍ତ ହୋଇ ମୋ ଉପରେ ମନୋନିବେଶ କରନ୍ତି ଓ ମୋର ଉପାସନା କରନ୍ତି, ମୋ ମତରେ ସେମାନେ ଶ୍ରେଷ୍ଠ ଅଟନ୍ତି ।

ଜୀବନର ପରମ ଲକ୍ଷ୍ୟ ବ୍ରହ୍ମସାକ୍ଷାତ୍‌କାର । ଯେଉଁ ବ୍ୟକ୍ତି ଏହି ପରମ ଲକ୍ଷ୍ୟରେ ଉପନୀତ ହୁଅନ୍ତି, ସେ ସମସ୍ତ ପ୍ରାଣୀ ମଧ୍ୟରେ ସର୍ବଶ୍ରେଷ୍ଠ ସ୍ଥାନ ଅଧିକାର କରନ୍ତି । ଏହି ପରମ ଲକ୍ଷ୍ୟରେ ଉପନୀତ ହେବାପାଇଁ ମାନବ ବହୁ ପଥ ଆବିଷ୍କାର କରିଛି; କିନ୍ତୁ ସବୁଠାରୁ ସରଳ, ସହଜ ଉପାୟ ହେଉଛି ଶ୍ରଦ୍ଧାଯୁକ୍ତ ଭକ୍ତି । ସେଥିପାଇଁ ଭଗବାନ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି, "ଯେଉଁମାନେ ଶ୍ରଦ୍ଧାଯୁକ୍ତ ହୋଇ ମୋ ଉପରେ ମନୋନିବେଶ କରନ୍ତି ଓ ମୋର ଉପାସନା କରନ୍ତି, ସେମାନେ ଶ୍ରେଷ୍ଠ ଅଟନ୍ତି ।" ବାସ୍ତବିକ ଯେଉଁ ବ୍ୟକ୍ତି ଭକ୍ତି-ଦ୍ୱାରା ଭଗବାନଙ୍କୁ ନିଜର କରିପାରନ୍ତି, ଭଗବାନ ତାହାଙ୍କୁ ନିଜର ସର୍ବସ୍ୱ ଅର୍ପଣ କରି ନିଜର ଶାନ୍ତିମୟ କୋଳରେ ଆଶ୍ରୟ ଦିଅନ୍ତି ।

ମାଧବ ଦାସ ଥିଲେ ସେହିପରି ଜଣେ ଶ୍ରଦ୍ଧାଯୁକ୍ତ ଭକ୍ତ । ସେ କିପରି ନିଜର ଐକାନ୍ତିକ ଭକ୍ତିଦ୍ୱାରା ଭଗବାନଙ୍କୁ ନିଜର କରିପାରିଥିଲେ; ତାହା ନିମ୍ନୋକ୍ତ ଚରିତରୁ ସହଜରେ ଅନୁମିତ ହୁଏ ।

ମାଧବ ଦାସଙ୍କ ଘର ଥିଲା କାନ୍ୟକୁବ୍ଜରେ । ପ୍ରାରମ୍ଭିକ ଜୀବନରେ ସେ ଘର ସଂସାର କରି ବହୁ ଧନସମ୍ପତ୍ତିର ଅଧିକାରୀ ଥିଲେ । କାନ୍ୟକୁବ୍ଜର ଜଣେ ବଡ଼ ବିଦ୍ୱାନ ତଥା ଧାର୍ମିକ ଭକ୍ତ-ଭାବରେ ମଧ୍ୟ ସେ ଖ୍ୟାତି ଅର୍ଜନ କରିଥିଲେ; କିନ୍ତୁ ଯେତେବେଳେ ତାଙ୍କର ଧର୍ମପତ୍ନୀ ଇହ ସଂସାରରୁ ବିଦାୟ ନେଲେ, ସେତେବେଳେ ତାଙ୍କର ହୃଦୟ ବୈରାଗ୍ୟରେ ପୂର୍ଣ୍ଣ ହୋଇଗଲା । ସଂସାରର ଅସାରତା ହୃଦୟଙ୍ଗମ କରି ସେ ସମସ୍ତ ସମ୍ପତ୍ତି ପରିତ୍ୟାଗପୂର୍ବକ ଶ୍ରୀକ୍ଷେତ୍ର ପଥର ଯାତ୍ରୀ ହେଲେ । ଶ୍ରୀକ୍ଷେତ୍ରରେ ପହଞ୍ଚି ପ୍ରଥମେ ସେ ଜଗନ୍ନାଥଙ୍କୁ ଦର୍ଶନ କଲେ ଓ ପରେ ସମୁଦ୍ର କୂଳକୁ ଯାଇ ନିଜର ସାଧନକ୍ଷେତ୍ର ପ୍ରସ୍ତୁତ କଲେ । ପ୍ରାରମ୍ଭିକ ଜୀବନରେ ସେ ଜଣେ ଭକ୍ତ ଥିବାରୁ ସାଧନାରେ ମନୋନିବେଶ କରିବା ତାଙ୍କ ପକ୍ଷରେ କଠିନ ନ ଥିଲା । ସେ ଘଣ୍ଟା ଘଣ୍ଟା ଧରି ଧ୍ୟାନସ୍ଥ ହୋଇ ପଡ଼ୁଥିଲେ ଏବଂ ହୃଦୟରେ ଜଗନ୍ନାଥଙ୍କ ଦର୍ଶନ ପାଇ ପରମ ଆନନ୍ଦ ଅନୁଭବ କରୁଥିଲେ । ଖାଦ୍ୟ କିମ୍ବା ପାନୀୟ ପ୍ରତି ତାଙ୍କର ଲକ୍ଷ୍ୟ ନ ଥିଲା । ବିନା ଆହାରରେ ସେ ଦିନ ଦିନ ଧରି ଧ୍ୟାନସ୍ଥ ରହୁଥିଲେ; କିନ୍ତୁ ଶରୀର ରକ୍ଷାପାଇଁ ଖାଦ୍ୟ ଯେ ଏକାନ୍ତ ପ୍ରୟୋଜନ ! ଭଗବାନଙ୍କ ପ୍ରେମରେ ଭକ୍ତ ସିନା ସବୁ କିଛି ଭୁଲିଯାଏ; କିନ୍ତୁ ଭଗବାନ ଭକ୍ତର ସୁରକ୍ଷା ପାଇଁ ସର୍ବଦା ସତର୍କ ଥାନ୍ତି । ତେଣୁ ମାଧବ ଦାସଙ୍କ ପ୍ରେମ ଭକ୍ତିରେ ଜଗନ୍ନାଥ ବିହ୍ୱଳ ହୋଇ ପଡ଼ିଲେ ମଧ୍ୟ ଭକ୍ତଙ୍କର ଶରୀର ରକ୍ଷା ପାଇଁ ତାଙ୍କର ମନ ଛଟପଟ ହେବାକୁ ଲାଗିଲା । ଦିନେ ରାତିରେ ସେ ସୁବର୍ଣ୍ଣ ଥାଳୀରେ ମହାପ୍ରସାଦ ପୂର୍ଣ୍ଣକରି ମାଧବ

ଦାସଙ୍କ ନିକଟରେ ରଖିଦେଇ ଆସିଲେ । ଧ୍ୟାନ ପରେ ମାଧବ ଦାସ ଚକ୍ଷୁ ଖୋଲି ଦେଖିଲେ, ତାଙ୍କ ସମ୍ମୁଖରେ ଗରମ ମହାପ୍ରସାଦପୂର୍ଣ୍ଣ ସୁବର୍ଣ୍ଣ ଥାଳୀ ରଖାଯାଇଛି । ତାଙ୍କ ପ୍ରତି ଜଗନ୍ନାଥଙ୍କର ତାହା ଅସୀମ କରୁଣା ବୋଲି ମନେକରି ମାଧବ ଦାସ ସେହି ମହାପ୍ରସାଦ ଭୋଜନକଲେ ଏବଂ ଥାଳୀଟିକୁ ଗୋଟିଏ କଡ଼ରେ ରଖିଦେଇ ପୁଣି ଧ୍ୟାନସ୍ଥ ହୋଇପଡ଼ିଲେ ।

ତତ୍ପର ଦିନ ପ୍ରଭାତରେ ମନ୍ଦିରର ପଣ୍ଡାମାନେ ଭଣ୍ଡାର ଘର ଖୋଲି ଦେଖିଲେ, ଜଗନ୍ନାଥଙ୍କର ସୁବର୍ଣ୍ଣ ଥାଳୀ ଭଣ୍ଡାର ଘରୁ ଅଦୃଶ୍ୟ ହୋଇଯାଇଛି । ସଙ୍ଗେ ସଙ୍ଗେ ଏହି ସମ୍ବାଦ ବିଦ୍ୟୁତ୍ ବେଗରେ ଚତୁର୍ଦ୍ଦିଗରେ ବ୍ୟାପିଗଲା । ମନ୍ଦିରର ବଡ଼ପଣ୍ଡା ଅନ୍ୟ ପଣ୍ଡାମାନଙ୍କୁ ସଙ୍ଗରେ ଧରି ଥାଳୀର ଅନ୍ୱେଷଣରେ ବାହାରିଲେ । ବହୁ ଅନ୍ୱେଷଣ ପରେ ସମୁଦ୍ର କୂଳରେ ମାଧବ ଦାସଙ୍କ ନିକଟରେ ଥାଳୀଟି ମିଳିଲା । ଫଳରେ ସମସ୍ତଙ୍କ ସମ୍ମୁଖରେ ମାଧବ ଦାସ ଚୋର ବୋଲି ସାବ୍ୟସ୍ତ ହେଲେ । ବଡ଼ପଣ୍ଡାଙ୍କ ନିର୍ଦ୍ଦେଶରେ ମାଧବ ଦାସଙ୍କୁ ବେତ୍ରରେ ପ୍ରହାର କରାଗଲା; ମାତ୍ର ମାଧବ ଦାସ ଜଗନ୍ନାଥଙ୍କ ନାମ ଉଚ୍ଚାରଣ କରି ସମସ୍ତ ପ୍ରହାର ହସିହସି ସହ୍ୟ କଲେ ।

ସେହିଦିନ ରାତିରେ ବଡ଼ପଣ୍ଡା ସ୍ୱପ୍ନରେ ଦେଖିଲେ, ଜଗନ୍ନାଥ ମହାପ୍ରଭୁ ଧମକପୂର୍ଣ୍ଣ ବାକ୍ୟରେ କହୁଛନ୍ତି—"ମାଧବ ଦାସ ମୋର ପରମ ଭକ୍ତ । ତୁମେ ତାହାଙ୍କୁ ପ୍ରହାରକରି ଘୋର ଅପରାଧ କରିଛ । ମୁଁ ନିଜେ ଯାଇ ସୁବର୍ଣ୍ଣ ଥାଳୀରେ ତାହାଙ୍କୁ ଖାଦ୍ୟ ପରି-ବେଷଣ କରିଥିଲି । ପ୍ରକୃତରେ ସେ ଚୋର ନୁହନ୍ତି । ତେଣୁ ତୁମେ ତାଙ୍କ ନିକଟକୁ ଯାଇ ନିଜର ଅପରାଧ ସ୍ୱୀକାରକରି କ୍ଷମା ପ୍ରାର୍ଥନା କର । ନଚେତ୍ ତୁମର ଘୋର ଅମଙ୍ଗଳ ହେବ ।"

ଏପରି ସ୍ୱପ୍ନ ଦେଖିବା ପରେ ହଠାତ୍ ବଡ଼ପଣ୍ଡାଙ୍କର ନିଦ୍ରାଭଗ୍ନ ହେଲା । ଯେ କୌଣସି ପ୍ରକାରେ ରାତି କଟାଇ ତତ୍‌ପରଦିନ ପ୍ରଭାତରେ ସେ ମାଧବଦାସଙ୍କ ନିକଟକୁ ଯାଇ ତାଙ୍କୁ କ୍ଷମା ପ୍ରାର୍ଥନା କଲେ । ମାଧବଦାସ ବଡ଼ପଣ୍ଡାଙ୍କୁ କ୍ଷମାପ୍ରଦାନ କରି ନିର୍ଭୟ କଲେ ଏବଂ ଜଗନ୍ନାଥଙ୍କ ଧ୍ୟାନରେ ମନୋନିବେଶ କଲେ ।

ଏହିପରି ଭାବରେ ମାଧବ ଦାସଙ୍କ ଦିନଗୁଡ଼ିକ ଧ୍ୟାନ, ଭଜନ ଓ କୀର୍ତ୍ତନରେ ଅତିବାହିତ ହେବାକୁ ଲାଗିଲା । ଥରେ ସେ ଦାରୁଣ ଅତିସାର ରୋଗରେ ପୀଡ଼ିତ ହେଲେ । ତାଙ୍କର ଦେଖାଶୁଣା କରିବାକୁ କେହି ନ ଥିଲେ । ଦିନକୁଦିନ ଦୁର୍ବଳ ହୋଇ ଦିନେ ଆହାରରେ ଯେ ସମୁଦ୍ରକୂଳରେ ପଡ଼ିରହିଲେ । ଏପରିକି ସେ ଉଠିବସି ପାରିଲେ ନାହିଁ । ବହୁ କଷ୍ଟରେ ସେ କେବଳ ଜଗନ୍ନାଥଙ୍କ ନାମମାତ୍ର ଉଚ୍ଚାରଣ କରୁଥିଲେ । ଭକ୍ତଙ୍କର ଏପରି ଦାରୁଣ ବିପଦ ସମୟରେ ଭକ୍ତବତ୍ସଳ ଭଗବାନ କ'ଣ ସ୍ଥିରହୋଇ ରହିପାରନ୍ତେ ? ଫଳରେ ଜଗନ୍ନାଥଙ୍କ ଆସନ ଥରିବାକୁ ଲାଗିଲା । ସେ ଏକ ବାଳକ ବେଶ ଧରି ମାଧବ ଦାସଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ତାଙ୍କର ସେବାଶୁଶ୍ରୂଷା କରିବାକୁ ଲାଗିଲେ । ଭଗବାନଙ୍କର ସେବା ଶୁଶ୍ରୂଷାରେ ମାଧବଦାସ ଅଳ୍ପକ୍ଷଣ ମଧ୍ୟରେ ରୋଗମୁକ୍ତ ହୋଇଗଲେ । ସୁସ୍ଥ ହେବାପରେ ସେ ଦେଖିଲେ, ଯେଉଁ ପ୍ରଭୁଙ୍କୁ ସେ ହୃଦୟରେ ଦର୍ଶନ କରୁଥିଲେ, ସେହି ପ୍ରଭୁ ବାଳକ ବେଶରେ ତାଙ୍କର ସେବା ଶୁଶ୍ରୂଷା କରୁଛନ୍ତି । ସଙ୍ଗେ ସଙ୍ଗେ ସେ ବାଳକ ବେଶଧାରୀ ଜଗନ୍ନାଥଙ୍କୁ ପ୍ରଣାମକରି ଭକ୍ତ ଗଦ୍‌ଗଦ୍ କଣ୍ଠରେ କହିଲେ—"ହେ ପ୍ରଭୁ ! ମୁଁ ଜଣେ ଅଧମ ବ୍ୟକ୍ତି । ଆପଣଙ୍କ ଦାସାନୁଦାସ । ମୋ ଘୁର ପାଇଁ ଆପଣ ସତେ କେତେ କଷ୍ଟ ସ୍ୱୀକାର କଲେ ! ଆପଣ

ସର୍ବଶକ୍ତିମାନ ପରଂବ୍ରହ୍ମ । ଆପଣ ଇଚ୍ଛାକରିଥିଲେ ମୋର ସମସ୍ତ ଦୁଃଖ ତ ଦୂର ହୋଇପାରିଥାନ୍ତା !"

ଭଗବାନ କହିଲେ—"ମାଧବ ! ମୁଁ ସବୁ କିଛି ସହି ପାରିଲେ ମଧ୍ୟ ଭକ୍ତମାନଙ୍କ ଦୁଃଖ କେବେ ହେଲେ ସହ୍ୟ କରିପାରେ ନାହିଁ । ସେଥିପାଇଁ ମୁଁ ନିଜହାତରେ ତୁମର ସେବା କରୁଥିଲି । ଅବଶ୍ୟ ମୁଁ ଇଚ୍ଛାକରିଥିଲେ ତୁମର ରୋଗ ଦୂର କରିପାରିଥାନ୍ତି; କିନ୍ତୁ ସୃଷ୍ଟିର ନିୟମ ଅନୁସାରେ ଜୀବ ତାହାର ପ୍ରାରବ୍ଧ କର୍ମ ଭୋଗ-କରିବାକୁ ବାଧ୍ୟ । ତୁମେ ତୁମର ପ୍ରାରବ୍ଧ କର୍ମ ଭୋଗକରି ଏବେ ରୋଗମୁକ୍ତ ହୋଇଛ । ମୁଁ ଆଶୀର୍ବାଦ କରୁଛି, ମୃତ୍ୟୁପରେ ତୁମେ ମୋର ଶାନ୍ତିମୟ କୋଡ଼ରେ ଆଶ୍ରୟ ପାଇବ ।"

ଭକ୍ତଙ୍କୁ ଏପରି ମଧୁର ବାକ୍ୟରେ ସନ୍ତୁଷ୍ଟକରି ଜଗନ୍ନାଥ ତତ୍କ୍ଷଣାତ୍ ଅଦୃଶ୍ୟ ହୋଇଗଲେ ।

ଏହି ଘଟଣା ପରେ ମାଧବଦାସଙ୍କ କୀର୍ତ୍ତି ଚତୁର୍ଦ୍ଦିଗରେ ବ୍ୟାପିଗଲା । ବିଭିନ୍ନ ସ୍ଥାନରୁ ଲୋକମାନେ ଆସି ତାଙ୍କର ଦର୍ଶନ ପାଇ ପରିତୃପ୍ତି ଲାଭକଲେ; କିନ୍ତୁ ବହୁଜନ ସମାଗମରେ ମାଧବଦାସଙ୍କ ସାଧନାରେ ବାଧା ସୃଷ୍ଟି ହେଲା । ତେଣୁ ସେ ଗୋଟିଏ ସ୍ଥାନରେ ସ୍ଥିର ନ ରହି ବିଭିନ୍ନ ସ୍ଥାନରେ ବୁଲିବାକୁ ଲାଗିଲେ ଏବଂ ହରିନାମ କୀର୍ତ୍ତନ କରିକରି ସମୟ ଅତିବାହିତ କଲେ । ଥରେ ସେ ଭିକ୍ଷା ସଂଗ୍ରହ କରିବା ପାଇଁ ଜଣେ ସ୍ତ୍ରୀ ଲୋକର ଗୃହରେ ଉପସ୍ଥିତ ହେଲେ । ସେହି ସମୟରେ ସ୍ତ୍ରୀ ଲୋକଟି କୌଣସି ପର୍ବ ଉପଲକ୍ଷେ ଗୃହର ଚୂନାର ପିଣ୍ଡରେ ଝୋଟି ଦେଉଥିଲା । ମାଧବ ଦାସଙ୍କୁ ଦେଖିବା ମାତ୍ରେ ସେ କ୍ରୋଧୋନ୍ମତ୍ତ ହୋଇ ପିଣ୍ଡ-ବୋଳା କନାଖଣ୍ଡିକ ତାଙ୍କ ମୁହଁକୁ ନିକ୍ଷେପ କଲା । ମାଧବ ଦାସ

କ୍ରୋଧ କମ୍ବା ବିରକ୍ତି ପ୍ରକାଶ ନ କରି ସେହି କନାଖଣ୍ଡିକ ନିଜ ବାସ ସ୍ଥାନକୁ ନେଇ ଆସିଲେ ଏବଂ ତାହାକୁ ଧୂଆଧୋଇ କରି ଓ ଶୁଖାଇ ସେଥିରେ ବତି ପ୍ରସ୍ତୁତ କଲେ । ସେହି ବତିକୁ ନେଇ ମନ୍ଦିରକୁ ଗମନ କରି ସେ ଜଗନ୍ନାଥଙ୍କ ନିକଟରେ ଦୀପ ଜାଳିଲେ । ବଡ଼ ଆଶ୍ଚର୍ଯ୍ୟର କଥା, ବତିଟି ଯେତେ ଉଜ୍ଜ୍ୱଳ ହୋଇ ଜଳିବାକୁ ଲାଗିଲା, ପୂର୍ବୋକ୍ତ ସେହି ସ୍ତ୍ରୀଲୋକର ହୃଦୟରେ ସେହି ଅନୁପାତରେ ଭକ୍ତିଭାବ ସଞ୍ଚାରିତ ହେଲା । ଅଳ୍ପଦିନ ମଧ୍ୟରେ ସେହି ସ୍ତ୍ରୀଲୋକଟି ପରମ ଭକ୍ତିମତୀରେ ପରିଣତ ହୋଇ ଲୋକମାନଙ୍କର ଆଦରଣୀୟା ହୋଇପାରିଲା ।

ଥରେ କାଶୀର ଜଣେ ବଡ଼ ପଣ୍ଡିତ ଶାସ୍ତ୍ରାର୍ଥଦ୍ୱାରା ଦିଗ୍‌ବିଜୟ କରିବାପାଇଁ ଶ୍ରୀକ୍ଷେତ୍ରରେ ଆସି ଉପସ୍ଥିତ ହେଲେ । ଅନ୍ୟ କ୍ଷେତ୍ରମାନଙ୍କରେ ପଣ୍ଡିତମାନଙ୍କୁ ପରାସ୍ତକରି ଶେଷରେ ସେ ଶ୍ରୀକ୍ଷେତ୍ରରେ ଉପସ୍ଥିତ ହୋଇଥିଲେ । ଶ୍ରୀକ୍ଷେତ୍ରରେ ପହଞ୍ଚି ସେ ଶୁଣିଲେ ଯେ, ମାଧବ ଦାସ ହେଉଛନ୍ତି ଶ୍ରୀକ୍ଷେତ୍ରର ସବୁଠାରୁ ବଡ଼ ପଣ୍ଡିତ । ତେଣୁ ସେ ମାଧବଦାସଙ୍କ ନିକଟକୁ ଗମନକରି ତାଙ୍କୁ ତର୍କଯୁଦ୍ଧକୁ ଆହ୍ୱାନ କଲେ; କିନ୍ତୁ ମାଧବ ଦାସ ଥିଲେ ପରମ ଭକ୍ତ । ଭକ୍ତର ପ୍ରଧାନ ସମ୍ବଳ ବିଶ୍ୱାସ, ସେଥିରେ ତର୍କର ସ୍ଥାନ କାହିଁ ? ମାଧବ ଦାସ ପଣ୍ଡିତଙ୍କୁ ଯେତେ ବୁଝାଇଲେ ମଧ୍ୟ ପଣ୍ଡିତ ତାଙ୍କୁ ବାରମ୍ବାର ତର୍କଯୁଦ୍ଧକୁ ଆହ୍ୱାନ କଲେ । ଶେଷରେ ଅନନ୍ୟୋପାୟ ହୋଇ ମାଧବ ଦାସ ନିଜର ଦସ୍ତଖତ ସହିତ ଲେଖିଦେଲେ—"ମାଧବ ହାରିଲା, ପଣ୍ଡିତ ଜିତିଲେ ।"

ସେହି ଲେଖାଖଣ୍ଡିକ ଧରି ପଣ୍ଡିତ କାଶୀ ଫେରିଗଲେ ଏବଂ ପଣ୍ଡିତମାନଙ୍କର ଏକ ସଭା ଡକାଇ ନିଜର ଦିଗ୍‌ବିଜୟର କାହାଣୀ

ଘୋଷଣା କଲେ । ପଣ୍ଡିତମାନେ ଉପରୋକ୍ତ ଲେଖାଖଣ୍ଡିକ ପରୀକ୍ଷା କରି ଦେଖିଲେ ସେଥିରେ ଲେଖାଥିଲା—"ମାଧବ ଜିତିଲା, ପଣ୍ଡିତ ହାରିଲେ ।" ଏପରି ଅପମାନିତ ମନ୍ତବ୍ୟ ଦେଖିବା ମାତ୍ରେ ପଣ୍ଡିତଙ୍କର ଚକ୍ଷୁ ରକ୍ତବର୍ଣ୍ଣ ଧାରଣ କଲା । ସେ କ୍ରୋଧୋନ୍ମତ୍ତ ହୋଇ ପୁନଶ୍ଚ ଶ୍ରୀକ୍ଷେତ୍ରକୁ ଗମନପୂର୍ବକ ମାଧବ ଦାସଙ୍କ ବାସସ୍ଥଳୀରେ ଉପସ୍ଥିତ ହେଲେ । ସେତେବେଳେ ମାଧବ ଦାସ ତାଙ୍କ କୁଟୀରରେ ନ ଥିଲେ, ମାତ୍ର ଭକ୍ତର ମାନରକ୍ଷା କରିବାପାଇଁ ପ୍ରଭୁ ଜଗନ୍ନାଥ ମାଧବଦାସଙ୍କ ରୂପ ଧାରଣକରି ସେଠାରେ ଉପସ୍ଥିତ ଥିଲେ । ପଣ୍ଡିତ ମାଧବରୂପୀ ଜଗନ୍ନାଥଙ୍କୁ ତର୍କଯୁଦ୍ଧକୁ ଆହ୍ୱାନ କଲେ । ଜଗନ୍ନାଥ ତର୍କଯୁଦ୍ଧରେ ଅବତୀର୍ଣ୍ଣ ହେବାପାଇଁ ନିଜର ସମ୍ମତି ପ୍ରଦାନକଲେ । ତର୍କଯୁଦ୍ଧରେ ପଣ ରଖାଗଲା—'ଶାସ୍ତ୍ରାର୍ଥରେ ଯିଏ ପରାଜିତ ହେବ, ଯିଏ ମୁହଁରେ କଳାବୋଳି ଓ ଗଧରେ ଚଢ଼ି ନଗର ପରିକ୍ରମା କରିବ ।"

ତତ୍ପର ଦିନ ପ୍ରଭାତରେ ଏକ ପଣ୍ଡିତ ସଭା ଆହୂତ କରାଯାଇ ସେଠାରେ ତର୍କଯୁଦ୍ଧ ଆରମ୍ଭ ହେଲା । ମାଧବରୂପୀ ଜଗନ୍ନାଥ ପଣ୍ଡିତଙ୍କର ସମସ୍ତ ପ୍ରଶ୍ନର ଯଥାଯଥ ଉତ୍ତର ଦେଇ ପରେ ତାଙ୍କୁ ପ୍ରଶ୍ନବାଣରେ ଜର୍ଜରିତ କରିଦେଲେ । ସର୍ବଶେଷରେ ପଣ୍ଡିତ ନିଜର ପରାଜୟ ସ୍ୱୀକାର କଲେ । ତର୍କର ପଣ ଅନୁସାରେ ସେ ନିଜ ମୁହଁରେ କଳାବୋଳି ଓ ଗଧପୃଷ୍ଠ ଆରୋହଣ କରି ସହର ପରିକ୍ରମା କଲେ ଏବଂ ମାଧବରୂପୀ ଜଗନ୍ନାଥ ପଣ୍ଡିତଙ୍କ ପାର୍ଶ୍ୱରେ ଥାଇ ନିଜର ବିଜୟ ଡିଣ୍ଡିମ ଘୋଷଣା କରିବାକୁ ଲାଗିଲେ । ପଥ ମଧ୍ୟରେ ଏପରି ବିଚିତ୍ର ଦୃଶ୍ୟ ଦେଖି ପ୍ରକୃତ ମାଧବ ଦାସ ଜଗନ୍ନାଥଙ୍କର ଅଦ୍ଭୁତ ଲୀଳା ହୃଦୟଙ୍ଗମ କରିପାରିଲେ । ସେ ତତ୍କ୍ଷଣାତ୍ ଘଟଣା-ସ୍ଥଳୀକୁ ଆସି ଜଗନ୍ନାଥଙ୍କୁ ଚିହ୍ନି ପାରିଲେ ଏବଂ ତାଙ୍କ ପାଦତଳେ ପଡ଼ି ପଣ୍ଡିତଙ୍କୁ କ୍ଷମା କରିବାପାଇଁ ବାରମ୍ବାର ଅନୁରୋଧ କଲେ ।

ଜଗନ୍ନାଥ ସଙ୍ଗେ ସଙ୍ଗେ ସେଠାରୁ ଅଦୃଶ୍ୟ ହୋଇଗଲେ ।

ତାହାପରେ ମାଧବ ଦାସ ପଣ୍ଡିତଙ୍କୁ ଗଧମୂତ୍ରରୁ ଉଦ୍ଧାରି ତାଙ୍କୁ କ୍ଷମା ପ୍ରାର୍ଥନା କଲେ । ପଣ୍ଡିତ ମାଧବ ଦାସଙ୍କର ମହାନତା ଅନୁଭବ କରି ନିଜର ଅହଙ୍କାରତା ପାଇଁ ଲଜ୍ଜିତ ହେଲେ ।

ଜୀବନର ଅନ୍ତିମ ଅବସ୍ଥାରେ ଥରେ ମାଧବ ଦାସ ବୃନ୍ଦାବନକୁ ଯାତ୍ରା କରୁଥିଲେ । ପଥ ମଧ୍ୟରେ ଏକ ବାଈଜୀ ତାଙ୍କୁ ନିଜ ଗୃହକୁ ଡାକିନେଇ ଭୋଜନ ପ୍ରଦାନ କଲା । ମାଧବ ଦାସ ଭୋଜନ କରିବା ସମୟରେ ପ୍ରଭୁ ଜଗନ୍ନାଥ ଏକ ସୁନ୍ଦର ବାଳକ ବେଶ ଧାରଣକରି ତାଙ୍କ ସହିତ ଭୋଜନ କରିବାକୁ ଲାଗିଲେ । ସେହି ସୁନ୍ଦର ବାଳକକୁ ଦେଖିବା ମାତ୍ରେ ବାଈଜୀ ମାଧବ ଦାସଙ୍କୁ କହିଲା— "ଭଗବନ୍ ! କେଉଁ କଠୋରହୃଦୟା ମା' ଏପରି ସୁନ୍ଦର ବାଳକକୁ ଆପଣଙ୍କ ହାତରେ ଦେଇ ସନ୍ନ୍ୟାସୀ କରିଦେଇଛି ?" ମାଧବ ଦାସ ଦେଖିଲେ, ପ୍ରକୃତରେ ଶ୍ୟାମସୁନ୍ଦର କୃଷ୍ଣ ତାଙ୍କ ସହିତ ଭୋଜନ କରୁଛନ୍ତି । ଏପରି ଅଭିନବ ଦୃଶ୍ୟ ଦେଖି ତାଙ୍କ ଚକ୍ଷୁରୁ ଧାର ଧାର ଆନନ୍ଦାଶ୍ରୁ ଝରିବାକୁ ଲାଗିଲା । ସେ ବାଈଜୀର ଭାଗ୍ୟକୁ ବାରମ୍ବାର ପ୍ରଶଂସା କରି ସେଠାରୁ ବିଦାୟ ଗ୍ରହଣକଲେ ।

ଏହିପରି ଭକ୍ତ ମାଧବ ଦାସ ଜଗନ୍ନାଥଙ୍କ ସହିତ କେତେ ଭାବରେ ଯେ ଜଡ଼ିତ ଥିଲେ, ତାହାର କୌଣସି କଳନା ନାହିଁ । ଆଜି ମାଧବ ଦାସ ନାହାନ୍ତି ସତ; କିନ୍ତୁ ତାଙ୍କର କୀର୍ତ୍ତି ଏବେ ମଧ୍ୟ ଜଗନ୍ନାଥପ୍ରେମୀ ଉତ୍କଳୀୟମାନଙ୍କ ମାନସପଟରେ ଅଙ୍କିତହୋଇ ରହିଅଛି ।



# କୁଳଶିଖର ରାଜା ଓ ଶ୍ରୀଜଗନ୍ନାଥ

"ପାପାନଳସ୍ୟ ଦୀପ୍ତସ୍ୟ
ମା କୁର୍ବନ୍ତୁ ଭୟଂ ନରାଃ,
ଗୋବିନ୍ଦ ନାମ ମେଘୌଘୈ—
ର୍ନଶ୍ୟତେ ନୀରବିନ୍ଦୁଭିଃ ।"

(ଗରୁଡ଼ ପୁରାଣ)

ପ୍ରଦୀପ୍ତ ପାପାନଳ ଦେଖି କୌଣସି ମନୁଷ୍ୟ ଭୟ କରିବା ଉଚିତ ନୁହେଁ । କାରଣ ଗୋବିନ୍ଦଙ୍କର ନାମ ମେଘ ସଦୃଶ ହୋଇ-ଥିବାରୁ ତାହାର ବିନ୍ଦୁମାତ୍ର ଜଳ ସମସ୍ତ ପାପକୁ ନଷ୍ଟ କରିଦିଏ ।

ଏହି କଳି ଯୁଗରେ ଭବ ସଂସାରର ପାପସମୁଦ୍ରକୁ ପାରି ହେବାପାଇଁ ଗୋବିନ୍ଦଙ୍କର ନାମ-କୀର୍ତ୍ତନ ହିଁ ଏକମାତ୍ର ଅବଲମ୍ବନ । ମୁଖରେ ହରି-ନାମ ଥିଲେ ମନୁଷ୍ୟର ସମସ୍ତ କଷ୍ଟ ଖଣ୍ଡନ ହୋଇଯାଏ, ସେ ପରମାନନ୍ଦ ଲାଭ କରିବାକୁ ସମର୍ଥ ହୁଏ । ବାସ୍ତବିକ୍ ହରି-ନାମର ଦିବ୍ୟ ଆଲୋକ ଆଗରେ ପାପ-କାଳିମାର କ୍ଷୀଣ ସତ୍ତା ବିଲୁପ୍ତ ହୋଇଯାଏ । ସେଥିପାଇଁ କୁହାଯାଇଛି—

"ହରି ନାମରେ ପାପକ୍ଷୟ ଯେତେ
ପାପୀ କରି ନ ପାରେ ପାପ ତେତେ ।"

ଏଠାରେ ଆଲୋଚ୍ୟ କୁଳଶିଖର ରାଜାଙ୍କ ଜୀବନ ଚରିତରୁ ସ୍ପଷ୍ଟ ଅନୁମିତ ହୁଏ, ସେ କପରି ହରିନାମ କୀର୍ତ୍ତନ କରି ଦାରୁଣ ବିପଦରୁ ଉଦ୍ଧାର ପାଇଥିଲେ ଏବଂ ନୀଳାଦ୍ରୀଶ ଜଗନ୍ନାଥଙ୍କର ଦର୍ଶନ ଲାଭକରି ନିଜର ଜୀବନକୁ ଧନ୍ୟ କରି ପାରିଥିଲେ ।

କୁଳଶିଖର ଥିଲେ ଉତ୍କଳ ରାଜ୍ୟରେ କୌଣସି ଏକ ଭୂଖଣ୍ଡର ଜଣେ ପ୍ରତାପୀ ରାଜା । ତାଙ୍କ ରାଜତ୍ୱକାଳରେ ପ୍ରଜାମାନେ ଅତ୍ୟନ୍ତ ସୁଖଶାନ୍ତିରେ ବସବାସ କରୁଥିଲେ; କାହାର କୌଣସି ଅଭାବ ଅସୁବିଧା ନ ଥିଲା, ତେଣୁ ପ୍ରଜାମାନେ ତାଙ୍କୁ ଦେବତାପରି ମାନ୍ୟ-କରୁଥିଲେ । ବାସ୍ତବରେ କୁଳଶିଖର ରାଜାଥିଲେ ସର୍ବଗୁଣସମ୍ପନ୍ନ । ସେ ସୂର୍ଯ୍ୟପରି ତେଜସ୍ୱୀ, ମେରୁପରି ଧୈର୍ଯ୍ୟଶୀଳ, ଗମ୍ଭୀର ସାଗର ପରି ହୃଦୟବାନ୍, କଳ୍ପତରୁ ପରି ଦାତା, ବୃହସ୍ପତି ପରି ପଣ୍ଡିତ, ପୃଥିବୀପରି ସହିଷ୍ଣୁ, କନ୍ଦର୍ପ ପରି ସୁନ୍ଦର, ଶିବଙ୍କପରି ଶକ୍ତିମାନ୍ ଓ କୁବେରପରି ଧନବାନ୍ ଥିଲେ । କେବଳ ସେତିକି ନୁହେଁ, ସେ ଥିଲେ ଏକାନ୍ତ ହରିଭକ୍ତି ପରାୟଣ । ନୀଳାଦ୍ରୀଶ୍ୱର ଜଗନ୍ନାଥଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ସେ ପ୍ରତ୍ୟହ ଜଗନ୍ନାଥଙ୍କର ଭଜନ କୀର୍ତ୍ତନ କରି ଘଣ୍ଟା ଘଣ୍ଟା ସମୟ ବିତାଇ ଦେଉଥିଲେ ।

ଥରେ ସେ ରାଜସିଂହାସନ ଉପରେ ଉପବିଷ୍ଟ ହୋଇ ରାଜ୍ୟର ଖବର ଅନ୍ତର ବୁଝୁଥିଲେ । ଏହି ସମୟରେ ତାଙ୍କର ଦୀକ୍ଷାଗୁରୁ ଆସି ରାଜସଭାରେ ଉପସ୍ଥିତ ହେଲେ । ସଙ୍ଗେ ସଙ୍ଗେ ସେ ସିଂହାସନ ଉପରୁ ଉଠି ଗୁରୁଙ୍କ ନିକଟକୁ ଗମନ କଲେ ଏବଂ ସାଷ୍ଟାଙ୍ଗ ପ୍ରଣିପାତପୂର୍ବକ ଗୁରୁଙ୍କ ପାଦଧୂଳି ନେଇ ନିଜ କପାଳରେ ବୋଳିଦେଲେ । ତାହାପରେ ସେ ବିନମ୍ର ଭାବରେ ଗୁରୁଙ୍କୁ ଦିବ୍ୟାସନ ପ୍ରଦାନ କରି ରାଜସିଂହାସନ ଗ୍ରହଣ କଲେ । କିଛି ସମୟ ପରେ ଗୋଟିଏ ମାଛି କେଉଁଠୁ ଉଡ଼ିଆସି ରାଜାଙ୍କ କପାଳରେ ବସିଲା ।

ରାଜା ଅଶ୍ୱସ୍ତି ଅନୁଭବ କରି ହାତରେ ମାଣ୍ଡୁଟିକୁ ଘଷିଡ଼ାଇ ଦେବାମାତ୍ରେ କପାଳରେ ଲାଗିଥିବା ଗୁରୁଙ୍କ ପାଦଧୂଳି ତଳେ ଖସି ପଡ଼ିଲା । ଏହା ଦେଖି ରାଜାଙ୍କ ଦୀକ୍ଷାଗୁରୁ ରାଜାଙ୍କୁ ଆକ୍ଷେପ କରି କହିଲେ—

"ଯେ ଜନ ଶ୍ରୀଗୁରୁ ସ୍ଥମୂଳରେ । ସାଷ୍ଟାଙ୍ଗେ ଦଣ୍ଡବତ କରେ ।
ତା ଅଙ୍ଗେ ଲାଗେ ଯେତେ ଧୂଳି । ତେତେ ଜନ୍ମର ପାପ ଦଳି ।
ସେ ଧୂଳି ଦେଖି ଯେଉଁ ନର । ହସ୍ତରେ ଝାଡ଼ି କରେ ଦୂର ।
ତାର ପାତକ ହୁଏ କେତେ । ବିସ୍ତାର କରି କହ ଦଗତେ ।
ତୋର ଶ୍ରୀହସ୍ତ ବାଜିବାରୁ । ଧୂଳି ଝଡ଼ିଲା କପାଳରୁ ।"
(ଦାର୍ଢ୍ୟତା ଭକ୍ତି)

ରାଜାଙ୍କୁ ଏପରି ଆକ୍ଷେପ କରି ତାଙ୍କର ଦୀକ୍ଷାଗୁରୁ ସଙ୍ଗେସଙ୍ଗେ ସେଠାରୁ ବାହାରିଗଲେ । ରାଜା ନିର୍ବାକ୍ ନିସ୍ପନ୍ଦ ହୋଇ ଗୁରୁଦେବଙ୍କ ଚଲାପଥକୁ ଅନାଇଁ ରହିଲେ ନିଷ୍ପଲକ ନୟନରେ । ତାଙ୍କ ର ଆଖିରୁ ଧାରଧାର ହୋଇ ଲୁହ ଝରିବାକୁ ଲାଗିଲା । ନିଜର ଅଜ୍ଞାତରେ ଗୁରୁଦ୍ରୋହ କରି ସେ ଯେଉଁ ପାପ ଅର୍ଜନ କରିଛନ୍ତି, ତାହାର ଭୟାବହ ପରିଣାମ ଚିନ୍ତାକରି ସେ ଦୁଃଖରେ ଅଧୀର ହୋଇ ପଡ଼ିଲେ । ଗୁରୁଦ୍ରୋହଜନିତ ପାପରୁ ମୁକ୍ତି ପାଇବାପାଇଁ ପ୍ରାୟଶ୍ଚିତ୍ତ କରିବା ଛଡ଼ା ଅନ୍ୟ କିଛି ଉପାୟ ନଦେଖି, ସେ ଅବିଳମ୍ବରେ ପଣ୍ଡିତମାନଙ୍କୁ ଡକାଇ ପଚାରିଲେ—

"ହେ ମହା ସଭାଜନେ ଶୁଣ । ମୋ ପାପ ହୁଏ ଯା ପ୍ରମାଣ ॥
ଶ୍ରୀଗୁରୁ ଦ୍ରୋହ ଦୋଷ ମୋର । କେମନ୍ତେ ହେବ ଏବେ ଦୂର ।
ଏଥିକୁ ଦେଖି ଶାସ୍ତ୍ର ପଥ । କିବା ଲେଖିଛି ପ୍ରାୟଶ୍ଚିତ୍ତ ।
ନୋହିଲେ ମରିବି ଅବଶ୍ୟ । ଏ ରାଜ ପଦେ ନାହିଁ ଆଶ ।"
(ଦାର୍ଢ୍ୟତା ଭକ୍ତି)

ରାଜାଙ୍କର କାତର ନିବେଦନ ଶୁଣି ପଣ୍ଡିତମାନେ ଗୁରୁଦ୍ରୋହ ରୂପ ପାପର ପ୍ରାୟଶ୍ଚିତ୍ତ ପାଇଁ ଶାସ୍ତ୍ରମାନ ଖୋଜିବାକୁ ଲାଗିଲେ । ପ୍ରାୟଶ୍ଚିତ୍ତ ପାଇଁ ଶାସ୍ତ୍ରରେ ଯେଉଁ ନିର୍ଦ୍ଦେଶ ଥିଲା, ତାହା ପାଠକରି ପଣ୍ଡିତମାନଙ୍କର ବୁଦ୍ଧି ଭ୍ରମ ହୋଇଗଲା । ସେମାନେ କିଛି କହି ନପାରି ଚୁପ୍ ହୋଇ ବସି ରହିଲେ । ସେମାନଙ୍କର ନୀରବତା ଦେଖି ରାଜା ଆଶ୍ଚର୍ଯ୍ୟ ହେଲେ ଏବଂ ଶୀଘ୍ର ପ୍ରାୟଶ୍ଚିତ୍ତର ବିଧି କହିବା ପାଇଁ ବାରମ୍ବାର ଅନୁରୋଧ କଲେ । ପଣ୍ଡିତମାନେ ଅନନ୍ୟୋପାୟ ହୋଇ ଶେଷରେ କହିଲେ—

"ହେ ରାଜା ଶୁଣ ସାବଧାନେ । ଗୁରୁଚରଣେ ଯେଉଁମାନେ ।
ସାଷ୍ଟାଙ୍ଗେ ଦଣ୍ଡବତ କରି । ଭୂମିରେ ରହନ୍ତି ଉଭାରି ।
ତା ଅଙ୍ଗେ ଥାଇ ରେଣୁ ଯେତେ । ତେତେ ଜନମ ପରିଯନ୍ତେ ।
ସଞ୍ଚରି ଥାଇ ଯେ କଳୁଷ । ତକ୍ଷଣେ ହୋଏ ସର୍ବନାଶ ।
ବଡ଼ମା ପଣେ ଯେଉଁମାନେ । ସେ ରେଣୁ ଝାଡ଼ନ୍ତି ଅଜ୍ଞାନେ ।
ତାଙ୍କ ସୁକୃତ ଆଉ ନାହିଁ । କେବଳ କଥାଏ ଅଛଇ ।
ଏମନ୍ତ କରି ଯେବେ ପାରି । ସେ ଗୁରୁଦ୍ରୋହ କଷ୍ଟ ତରି ।
ତମ୍ବା ପଟାଏ ଗଢ଼ାଇବ । ଦ୍ୱାଦଶ ହାତ ଦୀର୍ଘ ହେବ ।
ପ୍ରସ୍ଥ ଯେ ତିନିହାତ ଜାଣ । ଚଉକେ ବହଳ ପ୍ରମାଣ ।
ପୋତାଇ ତମ୍ବା ଗୁରୁ ଖମ୍ବ । ସେ ପଟା କରିଥିବ ଦମ୍ଭ ।
ଅଙ୍ଗାର ଅଗ୍ନି ତଥି ତଳେ । ଦେଇଣ ମହାଯନ୍ତ୍ର ଜାଳେ ।
ସେ ପଟା ତାତ୍ତ ଅଗ୍ନି ପ୍ରାୟ । ଦିଶିବ ଅତି ତେଜୋମୟ ।
ତହିଁରେ ଶତ ଅଷ୍ଟବାର । ପ୍ରଣାମ କରିବ ସେ ନର ।
ତେବେତ ଗୁରୁଦ୍ରୋହ ଦୋଷ । ତା ଦେହୁ ହୋଇବ ବିନାଶ ।
ନୋହିଲେ ଆନ ନାହିଁ ପାର । ଏହା ଲେଖିଛି ବେଦବର ।"

(ଦାର୍ଢ୍ୟତା ଭକ୍ତି)

ପ୍ରାୟଶ୍ଚିତ୍ତର ଏପରି କଠୋର ବିଧାନ ଶୁଣିବା ମାତ୍ରେ ରାଜସଭାରେ ଉପସ୍ଥିତ ଥିବା ଲୋକମାନେ ଆତଙ୍କରେ ଥରିବାକୁ ଲାଗିଲେ; ମାତ୍ର କୁଳଶିଖର ରାଜା ସେପରି ପ୍ରାୟଶ୍ଚିତ୍ତ କରିବା ପାଇଁ ମନସ୍ଥ କରି ହର୍ଷୋତ୍ଫୁଲ୍ଲ ହୋଇପଡ଼ିଲେ ।

ରାଜାଦେଶ ପ୍ରାପ୍ତହୋଇ ଯଥା ସମୟରେ ଶାସ୍ତ୍ରବିଧି ମୁତାବକ ତମ୍ବାପଟା ଓ ଖମ୍ବଚତୁଷ୍ଟୟ ତିଆରି କରାଗଲା । ନିର୍ଦ୍ଦିଷ୍ଟ ଶୁଭଦିନରେ ତାହା ରାଜ୍ୟର ବହିର୍ଭାଗସ୍ଥ ବିସ୍ତୀର୍ଣ୍ଣ ପ୍ରାନ୍ତରକୁ ଅଣାଯାଇ ସେଠାରେ ଖମ୍ବ ଚାରୋଟି ପୋତାଗଲା ଓ ତାହା ଉପରେ ତମ୍ବା ପଟାଟି ସ୍ଥାପନ କରାଗଲା । ତାହାପରେ ତମ୍ବାପଟା ତଳେ ଅଙ୍ଗାର ଜାଳିବା ମାତ୍ରେ ତମ୍ବାପଟାଟି ଅଗ୍ନିରେ ଉତ୍ତପ୍ତ ହୋଇ ଅତ୍ୟନ୍ତ ତେଜୀୟାନ୍ ଦୃଶ୍ୟମାନ ହେଲା, ପ୍ରାରମ୍ଭିକ କ୍ରିୟା ସମାପ୍ତ ହେବାପରେ ରାଜା ତୀର୍ଥ ଜଳରେ ସ୍ନାନ କରି ଲଲାଟରେ ତିଳକ ଲେପନ କଲେ ଓ ଶୁକ୍ଳ ବସ୍ତ୍ର ପରିଧାନ କରି ଜଗନ୍ନାଥଙ୍କର ନିର୍ମାଲ୍ୟ କୈବଲ୍ୟ ମୁଖରେ ଗ୍ରହଣ କଲେ । ତାହାପରେ ସେ ହର୍ଷୋତ୍ଫୁଲ୍ଲ ମୁଖରେ ଉତ୍ତପ୍ତ ତମ୍ବାପଟା ନିକଟରେ ଉପସ୍ଥିତ ହେଲେ ।

ଏପରି ଏକ ଲୋମହର୍ଷଣକାରୀ ଦୃଶ୍ୟ ଦେଖିବା ପାଇଁ ସେଦିନ ରାଜ୍ୟର ସମସ୍ତ ଜନତା ସେଠାରେ ଉପସ୍ଥିତ ହୋଇଥିଲେ । ପାତ୍ର, ଅମାତ୍ୟ, ବନ୍ଧୁ, ବାନ୍ଧବ, ଯୋଗୀ, ସନ୍ନ୍ୟାସୀ, ବ୍ରହ୍ମଚାରୀ, ବୈଷ୍ଣବ, ଭିକ୍ଷୁକ, ସ୍ତ୍ରୀ, ପୁରୁଷ, ଶିଶୁ, ବୃଦ୍ଧା, ସମସ୍ତେ ସେଠାରେ ଏକତ୍ରିତ ହୋଇ ନେତ୍ରରୁ ଲୋତକଧାରା ବର୍ଷଣ କରୁଥିଲେ । ରାଜା ତମ୍ବାପଟା ନିକଟରେ ଉପସ୍ଥିତ ହେଲାକ୍ଷଣି ସମସ୍ତ ଜନତା ଏକ ସ୍ୱରରେ କହି ଉଠିଲେ – "ହେ ମହାରାଜ ! ଆପଣ ଯେଉଁ ଅମାନୁଷିକ ପଦକ୍ଷେପ ନେବାକୁ ଯାଉଛନ୍ତି, ତାହାଦ୍ୱାରା ଯେ ମୃତ୍ୟୁ ସୁନିଶ୍ଚିତ ! ଉତ୍ତପ୍ତ ତମ୍ବାପଟା ଉପରେ ଚଢ଼ି ଶହେ ଆଠଥର

ପ୍ରଣାମ କରିବା ତ ଦୂରର କଥା, ସେହି ତମ୍ବାପଟା ଉପରେ ପାଦ ରଖିବା ମାନେ ପ୍ରାଣବାୟୁ ଛଟପଟ ହୋଇ ଶରୀରରୁ ବାହାରିଯିବ । ଆପଣଙ୍କ ବିନା ଆମ୍ଭେମାନେ ସମସ୍ତେ ଅନାଥ ହୋଇଯିବୁ । ଅତଏବ୍ ହେ ରାଜନ୍ ! ଆପଣ ଏପରି କଠୋର ସଙ୍କଳ୍ପରୁ ବିରତ ହୋଇ ଆମ୍ଭମାନଙ୍କୁ ଦାରୁଣ ଦୁଃଖରୁ ଉଦ୍ଧାର କରନ୍ତୁ ।"

କୁଳଶିଖର ରାଜା କିନ୍ତୁ ନିଜ ସଙ୍କଳ୍ପରେ ଦୃଢ଼ ରହି କହିଲେ —"ହେ ମୋର ପ୍ରିୟ ପ୍ରଜାଗଣ ! ଜଗନ୍ନାଥ ମହାପ୍ରଭୁ ତୁମ୍ଭ-ମାନଙ୍କର ସହାୟ ଥାଉଥାଉ ତୁମ୍ଭେମାନେ କେବେହେଲେ ଅନାଥ ହେବନାହିଁ । ମୋର ମୃତ୍ୟୁ ପାଇଁ ତୁମ୍ଭମାନଙ୍କର ଶୋକ କରିବା ଉଚିତ ନୁହେଁ । ଜନ୍ମହେଲେ ମୃତ୍ୟୁ ସୁନିଶ୍ଚିତ । ମୃତ୍ୟୁ ଭୟରେ ଗୁରୁଦ୍ରୋହୀ ହୋଇ ବଞ୍ଚିରହିବା ଅପେକ୍ଷା ଗୁରୁ ଦ୍ରୋହ-ପାପରୁ ମୁକ୍ତି ପାଇବା ପାଇଁ ମୃତ୍ୟୁବରଣ କରିବା ସହସ୍ର ଗୁଣରେ ଶ୍ରେୟସ୍କର । ତେଣୁ ମୋର ଏକାନ୍ତ ଅନୁରୋଧ, ତୁମ୍ଭେମାନେ ଆଉ ମୋତେ ଏପରି ପବିତ୍ର ସଙ୍କଳ୍ପରେ ବାଧା ଦିଅନାହିଁ ।"

ଅଗତ୍ୟା ସମସ୍ତ ପ୍ରଜାଗଣ ନୀରବ ରହିବାକୁ ବାଧ୍ୟ ହେଲେ । ତାହାପରେ ରାଜା ନିଜର ଇଷ୍ଟଦେବତା ଜଗନ୍ନାଥ ମହାପ୍ରଭୁଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ—

"ଜୟ ହେ ଶଙ୍ଖ ଚକ୍ରପାଣି । କମଳା ଦେବୀ ପ୍ରାଣମଣି ।
ବ୍ରହ୍ମାଇନ୍ଦ୍ରାଦି ଏ ଜଗତ । ଯାର ଆଜ୍ଞାରେ ଯାତାୟାତ ।
ଶଶାଙ୍କ, ରବି, ଆଖଣ୍ଡଳ । ଯେ ଆଦି ସର୍ବ ଦିଗପାଳ ।
ମେରୁ, ବସୁଧା, ସିନ୍ଧୁ ବାରି । ଏ ନିତ୍ୟେ ଯାର ଆଜ୍ଞାକାରୀ ।
ସୁର, ମହେଶ, ପୁରନ୍ଦର । ଯକ୍ଷ, ରାକ୍ଷସ ଯେ କିନ୍ନର ।
ସିଦ୍ଧ ଯୋଗୀନ୍ଦ୍ର ମୁନିଗଣ । ଚିନ୍ତନ୍ତି ଯେ ହରି ଚରଣ ।
ମୁଁ ଅବା ସାମାନ୍ୟ ମାନବ । କାହୁଁ ଜାଣିବି ତାଙ୍କ ଭାବ ।

ହେ ପ୍ରଭୁ ତୁମେ ଆଦ୍ୟମୂଳ । ସମସ୍ତେ ତୋର ପଦ ଡାଳ ।
ଏଣୁ ତୋ ଅଭୟ ଚରଣ । ଆଜ ମୁଁ ପଶିଲି ଶରଣ ।
ତୁ ନାଥ ବାଞ୍ଛା କଳ୍ପତରୁ । ମହା ମହିମା ମହାମେରୁ ।
ଜନ ଆରତ ଖଣ୍ଡିବାରେ । ତୋ ସମ ନାହିଁ ବ୍ରହ୍ମାଣ୍ଡରେ ।
ଚିନ୍ତାର୍ଥୀ ଚିନ୍ତା ତୃଣବନ । ତୁ ଯେ ପ୍ରବଳ ହୁତାଶନ ।
ବିପତ୍ତି ସାଗର ବିନାଶି । ତୁ ଯେ ଅଗସ୍ତି ମହାଋଷି ।
ବିଷୟ ବିଷକୁ ଯେ ଗଦ । ତୋହର ଅଭୟ ପଦ୍ମପାଦ ।
ଭକ୍ତ କୁମୁଦ ବନପାଳ । ତୁମ୍ଭେ ଯେ ଚନ୍ଦ୍ରମା ମଣ୍ଡଳ ।
ଚିନ୍ତାର୍ଥୀ ଜନ ଚିନ୍ତାମଣି । ଅଶେଷ ବ୍ରହ୍ମାଣ୍ଡ କାରଣୀ ।
ଏ ମୋ ଆରତ ନିବାରଣେ । ତୁମ୍ଭ ବିନୁ ନାହିଁ ଅନ୍ୟ ଜଣେ ।
ଏ ମୋର ଅନଳ ଜ୍ୱାଳାରୁ । ଉଦ୍ଧର ଧର ମହାମେରୁ ।
ରଖ ନ ରଖ ତୁମ୍ଭ ଇଚ୍ଛା । ମୁଁ ଏବେ ଘେନିଲି ଏ ଦୀକ୍ଷା ।
ଯାଉ ବା ଥାଉ ଏ ଶରୀର । ନ ଲାଗୁ ଗୁରୁଦ୍ରୋହ ମୋର ।"

ଏହିପରି ପ୍ରାର୍ଥନା କରିବା ପରେ ରାଜା ନିଜର ଇଷ୍ଟମନ୍ତ୍ର ଜପ କରିବାକୁ ଲାଗିଲେ । ତାଙ୍କର ଶରୀର, ମନ, ପ୍ରାଣ ଜଗନ୍ନାଥମୟ ହୋଇ ଉଠିଲା । ସେ ହାତ ଟେକି ତମ୍ବାପଟା ଉପରକୁ ଉଠିବାପାଇଁ ଚେଷ୍ଟା କରିବା ମାତ୍ରେ ଅନୁଭବ କଲେ, କେହି ଜଣେ ତାଙ୍କୁ ହାତଧରି ଉପରକୁ ଉଠାଇ ନେଉଛି । ବିନା ପ୍ରୟାସରେ ସେ ତମ୍ବାପଟା ଉପରକୁ ଉଠିଗଲେ; କିନ୍ତୁ ଏ କ'ଣ ? ଉତପ୍ତ ତମ୍ବାପଟା ତାଙ୍କ ପାଦକୁ ପୋଡ଼ି ନ ଦେଇ ଶୀତଳ କରିଦେଉଛି !! ଆଶ୍ଚର୍ଯ୍ୟ-ଚକିତ ହୋଇ ସେ ସମ୍ମୁଖକୁ ଚାହିଁ ଦେଖିଲେ, ତାଙ୍କ ଆଗରେ ପରିପୂର୍ଣ୍ଣତମ ପ୍ରଭୁ ଜଗନ୍ନାଥ ଅପରୂପ ବେଶ ଧାରଣକରି ଦଣ୍ଡାୟମାନ ହୋଇଛନ୍ତି । ତାଙ୍କର ଚତୁର୍ଭୁଜରେ ଶଙ୍ଖ-ଚକ୍ର-ଗଦା-ପଦ୍ମ; କଟି ଦେଶରେ ପୀତ ବସ୍ତ୍ର; ମସ୍ତକରେ କିରୀଟ; କଣ୍ଠରେ

କୁଣ୍ଡଳ; କପାଳରେ ତିଳକ; କଣ୍ଠରେ କୌସ୍ତୁଭ ହାର; ବକ୍ଷ ଦେଶରେ ଶ୍ରୀବତ୍ସ ଚିହ୍ନ ଏବଂ ପାଦରେ ନୂପୁର ! କି ସୁନ୍ଦର ସେ ରୂପ ! କି ଅଭିନବ ସେ ଦୃଶ୍ୟ !! କୁଳଶିଖର ରାଜା ଏପରି ଅପରୂପ ଛବି ଦର୍ଶନକରି ହତବାକ୍ ହୋଇପଡ଼ିଲେ । ସେ ନିଜ ଆଖିକୁ ମଧ ବିଶ୍ୱାସ କରିପାରିଲେ ନାହିଁ । ତାଙ୍କ ପ୍ରତି ଭଗବାନଙ୍କର ଯେ କି ଅପାର କରୁଣା, ତାହା ଚିନ୍ତାକରିବା ମାତ୍ରେ ତାଙ୍କ ଆଖିରୁ ଧାର ଧାର ଆନନ୍ଦାଶ୍ରୁ ଝରିବାକୁ ଲଗିଲା । ଭାବବିହ୍ୱଳ ହୋଇ ସେ ଭଗବାନଙ୍କର ପାଦତଳେ ଲୋଟିପଡ଼ିଲେ । ପ୍ରଭୁ ଜଗନ୍ନାଥ ଭକ୍ତଙ୍କୁ ଆଶୀର୍ବାଦ କରି ଓ ଅଭୟ ବାକ୍ୟରେ ସନ୍ତୁଷ୍ଟ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ । ଅନନ୍ତର କୁଳଶିଖର ରାଜା ତମ୍ବାପଟା ଉପରେ ଶହେ ଆଠଥର ପ୍ରଣାମ କରି ଗୁରୁଦ୍ରୋହ ଦୋଷରୁ ମୁକ୍ତିଲାଭ କଲେ ।

ତମ୍ବାପଟା ଚତୁର୍ଦ୍ଦିଗରେ ଦଣ୍ଡାୟମାନ ସମବେତ ପ୍ରଜାଗଣ ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିପାରିଲେ ନାହିଁ ସତ; କିନ୍ତୁ ଉତ୍ତପ୍ତ ତମ୍ବାପଟା ଉପରେ ରାଜାଙ୍କୁ ନିର୍ବିକାର ଚିତ୍ତରେ ଶହେ ଆଠ ଥର ପ୍ରଣାମ କରୁଥିବାର ଦେଖି ନିର୍ବାକ୍ ନିସ୍ପନ୍ଦ ହୋଇ ପଡ଼ିଲେ । ରାଜାଙ୍କର ମହାନତା ଅନୁଭବ କରିବା ମାତ୍ରେ ସମସ୍ତଙ୍କ ଚକ୍ଷୁରୁ ଧାର ଧାର ଆନନ୍ଦାଶ୍ରୁ ଝରିଆସିଲା । ସମସ୍ତେ ରାଜାଙ୍କର ଜୟଧ୍ୱନି କରି ଆକାଶ ପବନ ମୁଖରିତ କରିଦେଲେ । ରାଜା ଜଗନ୍ନାଥଙ୍କର ଅପାର କରୁଣା ସ୍ମରଣ କରିକରି ତମ୍ବାପଟା ଉପରୁ ଓହ୍ଲାଇ ଆସିଲେ ଏବଂ ଆନନ୍ଦବିହ୍ୱଳରତ ପ୍ରଜାଗଣଙ୍କ ସହ ରାଜପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲେ ।

ଜ୍ଞାତସାରରେ ହେଉ ଅଥବା ଅଜ୍ଞାତରେ ହେଉ, ଥରେ ମାତ୍ର ଗୋବିନ୍ଦଙ୍କର ନାମ ମୁଖରେ ଉଚ୍ଚାରଣ କଲେ ଶତ ଶତ

ପାପକ୍ଷୟ ହୋଇଯାଏ । କୁଳଶିଖର ରାଜାଙ୍କପରି ଭକ୍ତ, ଯିଏ କି ଜଗନ୍ନାଥଙ୍କ ପାଦପଦ୍ମରେ ନିଜର ସର୍ବସ୍ୱ ଅର୍ପଣକରି ଅବିରତ ତାଙ୍କର ନାମ କୀର୍ତ୍ତନ କରୁଥିଲେ, ସେ ନିଜର ଅଜ୍ଞାତସାରରେ କରିଥିବା ଗୁରୁଦ୍ରୋହଜନିତ ପାପରୁ ଉଦ୍ଧାର ପାଇବା କି ବିଚିତ୍ର କଥା ! ସେ ଯେ କେବଳ ଗୋଟିଏ ପାପରୁ ଉଦ୍ଧାର ପାଇଥିଲେ ତାହାନୁହେଁ, ବରଂ ଜଗନ୍ନାଥଙ୍କର ଦିବ୍ୟ ଦର୍ଶନ ଲଭକରି କୋଟି କୋଟି ଜନ୍ମର ଅଗଣିତ ପାପରାଶିକୁ ଭସ୍ମୀଭୂତପୂର୍ବକ ମୁକ୍ତିପଥର ଯାତ୍ରୀ ହୋଇଥିଲେ ।

ଜଗନ୍ନାଥ ହେ ! ଯେତେଦିନ ପର୍ଯ୍ୟନ୍ତ ଆକାଶରେ ସୂର୍ଯ୍ୟ, ଚନ୍ଦ୍ର ଆତଯାତ ହେଉଥିବେ, ସେତେଦିନ ପର୍ଯ୍ୟନ୍ତ ତୁମର ପତିତପାବନ ବାନା ଫର ଫର ହୋଇ ଉଡ଼ୁଥିବ ।



# ରଘୁ ଦାସ ଓ ଶ୍ରୀଜଗନ୍ନାଥ

"ସନ୍ତୁଷ୍ଟଃ ସତତଂ ଯୋଗୀ ଯତାତ୍ମା ଦୃଢ଼ ନିଶ୍ଚୟଃ
ମୟ୍ୟର୍ପିତ ମନୋବୁଦ୍ଧି ର୍ଯୋମଦ୍ଭକ୍ତଃ ସ ମେ ପ୍ରିୟଃ ।"
(ଶ୍ରୀମଦ୍ଭଗବଦ୍‌ଗୀତା, ୧୨।୧୪)

ଶ୍ରୀମଦ୍ଭଗବଦ୍‌ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଛନ୍ତି, "ଯେଉଁ ବ୍ୟକ୍ତି ସର୍ବଦା ସନ୍ତୁଷ୍ଟ, ଯୋଗାଭ୍ୟାସୀ; ଜିତେନ୍ଦ୍ରିୟ ଓ ଅଚଳ ବିଶ୍ୱାସୀ ଏବଂ ଯେ ଆମ୍ଭଠାରେ ମନ ଓ ବୁଦ୍ଧି ଅର୍ପଣ କରି ଭକ୍ତି ପରାୟଣ ହୁଅନ୍ତି, ସେ ଆମ୍ଭର ପ୍ରିୟ ଅଟନ୍ତି ।"

ଯେଉଁ ଭକ୍ତ ସଂସାରର ଯାବତୀୟ ମାୟାମୋହରୁ ମୁକ୍ତ ହୋଇ ଜୀବର ଚରମ ଲକ୍ଷ୍ୟ ଶ୍ରୀମଦ୍ ଭଗବାନଙ୍କ ପାଦପଦ୍ମରେ ନିଜର ସର୍ବସ୍ୱ ଅର୍ପଣ କରନ୍ତି, ସେ ସୁଖଦୁଃଖକୁ ସମଜ୍ଞାନ କରି ସର୍ବଦା ସନ୍ତୁଷ୍ଟ ରହନ୍ତି । ତାଙ୍କର ମନ ପ୍ରାଣ, ବୁଦ୍ଧି ଓ ଇନ୍ଦ୍ରିୟ ସର୍ବଦା ଭଗବଦ୍‌ମୁଖୀ ହୋଇଥିବାରୁ ସେ ଏକ ଅତୀନ୍ଦ୍ରିୟ ରାଜ୍ୟରେ ବିଚରଣ କରି ସର୍ବଜ୍ଞ ଭଗବାନଙ୍କର ଦିବ୍ୟସତ୍ତା ଅନୁଭବ କରନ୍ତି । ଏପରି ଯେଉଁ ଭକ୍ତ, ଯାହାଙ୍କର ନିଷ୍ଠା ଅଚଳ ତଥା ଅଟଳ, ତାଙ୍କୁ ଭକ୍ତପ୍ରିୟ ଭଗବାନ ନିଜ ହୃଦୟରୁ ଦୂରେଇ ଦେବେ କିପରି ? ସେଥିପାଇଁ ସେ ଉପରୋକ୍ତ ସୁଗୁଣରେ ମଣ୍ଡିତ ଭକ୍ତଙ୍କୁ ନିଜର ଅତି ପ୍ରିୟ ବୋଲି ଘୋଷଣା କରିଛନ୍ତି ।

ସେହିପରି ରଘୁଦାସ ଥିଲେ ଜଗନ୍ନାଥ ମହାପ୍ରଭୁଙ୍କର ଜଣେ ଏକନିଷ୍ଠ ଓ ଅଚଳ ବିଶ୍ୱାସୀ ପ୍ରିୟ ଭକ୍ତ । ସେଥିପାଇଁ ତାଙ୍କ ଉପରେ ଜଗନ୍ନାଥଙ୍କର ଅପାର କରୁଣା ବର୍ଷିତ ହୋଇଥିଲା । ଜୀବନର ପ୍ରଥମଭାଗ ସେ ବିତାଇଥିଲେ ପଶ୍ଚିମ ଦେଶରେ । ତାଙ୍କର ସ୍ତ୍ରୀ ଥିଲା, ପୁତ୍ର କନ୍ୟା ଥିଲେ, ବନ୍ଧୁ ବାନ୍ଧବ ଥିଲେ ଓ ଅନେକ ଧନସମ୍ପତ୍ତି ମଧ୍ୟ ଥିଲା; କିନ୍ତୁ ମାୟା ମୋହପୂର୍ଣ୍ଣ ସଂସାରରେ ତାଙ୍କର ମନ ପୂର୍ଣ୍ଣ ଭାବରେ ଜଡ଼ିତ ହୋଇପାରୁ ନଥିଲା । ଯୌବନ ଅତିକ୍ରମ କରି ଯେତେବେଳେ ସେ ବାର୍ଦ୍ଧକ୍ୟ ଅବସ୍ଥାରେ ଉପନୀତ ହେଲେ, ସେତେବେଳେ ତାଙ୍କର ମନ ଆଧ୍ୟାତ୍ମିକ ପଥରେ ଗତି କରିବାକୁ ଲାଗିଲା । ଦିନେ ସେ ଏକାନ୍ତରେ ବସି ଚିନ୍ତାକଲେ—.

"× × × । ବନ୍ଧୁ କୁଟୁମ୍ବ ଆଦି ଯେତେ ।
କେହି ତ ନୁହନ୍ତି କାହାର । ଏ ସର୍ବ ମାୟାର ସଂସାର ।
ଧନ ସମ୍ପଦ ଆଦି ଯେତେ । ମିଥ୍ୟା କେବଳ ଏ ସମସ୍ତେ ।
ନ ଜାଣି ପ୍ରାଣୀ ଏଥେ ପଡ଼ି । ନିଜ ନିସ୍ତାର ପଥ ଛାଡ଼ି ।
ନ ଭଜି ପ୍ରଭୁ ଜଗନ୍ନାଥ । କେବଳ ହୋନ୍ତି ମୋହେ ରତ ।
ଏବେ ମୁଁ ଏମନ୍ତ କରିବି । ଅବଶ୍ୟ କ୍ଷେତ୍ରବରେ ଯିବି ।
ଭଜିଣ ପ୍ରଭୁ ଭଗବାନ । ସେ କ୍ଷେତ୍ରେ ନାଶିବି ଜୀବନ ।
ସେ ପ୍ରଭୁ ପତିତ ପାବନରୁ । ସେ ମୋର ବାଞ୍ଛା କଳ୍ପତରୁ ।"
(ଦାର୍ଢ୍ୟତା ଭକ୍ତି)

ଏହିପରି ବୈରାଗ୍ୟର କଥା ଚିନ୍ତା କରିବା ମାତ୍ରେ ରଘୁଦାସଙ୍କ ମନ ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ବ୍ୟାକୁଳ ହୋଇ ପଡ଼ିଲା । ସମସ୍ତଙ୍କ ଅଜ୍ଞାତରେ ସେ ଦିନେ ମାୟାର ବନ୍ଧନ ଛିନ୍ନକରି ଶ୍ରୀକ୍ଷେତ୍ର ପଥର ଯାତ୍ରୀ ହେଲେ । ଶ୍ରୀକ୍ଷେତ୍ରରେ ପହଞ୍ଚି ସେ ପ୍ରଥମେ ଜଗନ୍ନାଥଙ୍କୁ ଦର୍ଶନ କଲେ । ତାହାପରେ ସେ ରାମାନନ୍ଦ

ସମ୍ପ୍ରଦାୟରେ ଅନ୍ତର୍ଭୁକ୍ତ ହୋଇ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ଧର୍ମପ୍ରତି ତାଙ୍କର ଏକାନ୍ତ ଆଗ୍ରହ ଦେଖି ଏକ ବୈଷ୍ଣବମଠର ମହନ୍ତ ତାଙ୍କୁ ନିଜ ମଠରେ ଆଶ୍ରୟ ଦେଇଥିଲେ ।

ରଘୁଦାସ ପ୍ରତ୍ୟହ ପ୍ରଭାତରେ ନିଜର ନିତ୍ୟକର୍ମ ସମାପ୍ତ କରି ଜଗନ୍ନାଥ ମନ୍ଦିରକୁ ଗମନ କରୁଥିଲେ । ସେଠାରେ ସେ ଜଗନ୍ନାଥଙ୍କୁ ଦର୍ଶନ କରି ଜଣାଣ ଗାଉଥିଲେ ଓ ହରିନାମ କୀର୍ତ୍ତନ କରି ମଧ୍ୟାହ୍ନ ପର୍ଯ୍ୟନ୍ତ ଅବସ୍ଥାନ କରୁଥିଲେ । ତାହାପରେ ସେ ମଠକୁ ଆସି ଭୋଜନ ଗ୍ରହଣାନ୍ତେ ପୁଣି ଶ୍ରୀମନ୍ଦିରକୁ ଫେରି ଆସୁଥିଲେ । ସେଠାରେ ସେ ବଡ଼ସିଂହାର ବେଶ ସମାପ୍ତ ହେଲା ପର୍ଯ୍ୟନ୍ତ ଅବସ୍ଥାନ କରି ଭଜନ, କୀର୍ତ୍ତନ, ଆଳଟ ଦର୍ଶନ ଓ ସାଧୁସଙ୍ଗରେ ସମୟ ଅତି-ବାହିତ କରୁଥିଲେ । ବଡ଼ସିଂହାର ବେଶ ପରେ ମଠକୁ ଫେରି ଭୋଜନ ଗ୍ରହଣାନ୍ତେ ସେ ନିଦ୍ରାଚ୍ଛନ୍ନ ହୋଇ ପଡ଼ୁଥିଲେ ।

ଏହିପରି ଭାବରେ ରଘୁଦାସଙ୍କ ଦିନଗୁଡ଼ିକ ଖୁବ୍ ଆନନ୍ଦରେ କଟିଯାଉଥିଲା; କିନ୍ତୁ ସବୁଦିନ କ'ଣ ସମାନ ଯାଏ ? ସମୟର ପରିବର୍ତ୍ତନରେ ଦୁଃଖପରେ ଆସେ ସୁଖ, ସୁଖ ପରେ ଆସେ ଦୁଃଖ । ରଘୁଦାସଙ୍କ ଜୀବନରେ ମଧ୍ୟ ସେହିପରି ଏକ ପରିବର୍ତ୍ତନ ଆସିଲା । ରଘୁଦାସ ମଠରେ ଅବସ୍ଥାନ କରୁଥିଲେ ମଧ୍ୟ ମଠର କୌଣସି କାର୍ଯ୍ୟ କରୁ ନଥିଲେ । ସେ କେବଳ ମଠରେ ଖାଉଥିଲେ ଓ ଶୋଉ-ଥିଲେ । ବାକି ସମୟତକ ତାଙ୍କର କଟୁଥିଲା ମନ୍ଦିର ମଧ୍ୟରେ । ରଘୁଦାସଙ୍କର ଏପରି ଗତିମତି ମଠରେ ବାସ କରୁଥିବା ଅନ୍ୟ-ମାନଙ୍କର ଚକ୍ଷୁଶୂଳ ହେଲା । ମଠର ମହନ୍ତ ମଧ୍ୟ ତାଙ୍କ ଉପରେ ବିରକ୍ତ ହୋଇ ପଡ଼ିଲେ । ଦିନେ ରଘୁଦାସଙ୍କୁ ଶୁଣାଇ ଦିଆଗଲା—

"ଏ ଭୁମ୍ଭ କେମନ୍ତେ ବିଗୁର । ପଙ୍ଗତ ବେଳେ ଆଗୁଁ ସାର ।

ବିଷୟ୍ୱା ବେଳକୁ ନଥିବ । ଏହ୍ୱାଟି ପାଠୁଆଙ୍କ ଭାବ ।
ସମସ୍ତେ ଜାଣିଲୁ ତୁମ୍ଭର । ବେଗେ ମଠରୁ ବାହାରକର ।"
(ଦାର୍ଢ୍ୟତା ଭକ୍ତି)

ଅଗତ୍ୟା ମଠରୁ ବିତାଡ଼ିତ ହୋଇ ରଘୁ ଦାସ ଶ୍ୱେତଗଙ୍ଗା ନିକଟକୁ ଗମନ କଲେ । ଅପମାନ ହେତୁ ତାଙ୍କର ହୃଦୟ କୋହରେ ଭରିଯାଇଥିଲା ଓ ଚକ୍ଷୁଦ୍ୱୟ ଲୁହରେ ଛଳଛଳ ହୋଇ ଉଠିଥିଲା । ସେ ସେହିଠାରେ ଦୃଢ଼ାସନରେ ବସି ଜଗନ୍ନାଥଙ୍କୁ ଧ୍ୟାନ କରିବାକୁ ଲାଗିଲେ । ତାଙ୍କର ମନ ବାହ୍ୟ ରାଜ୍ୟରୁ ବିରତ ହୋଇ ଅନ୍ତଃ-ରାଜ୍ୟରେ ଭ୍ରମଣ କରିବାକୁ ଲାଗିଲା । ସେ ଜଗନ୍ନାଥ ପ୍ରେମରେ ମଗ୍ନ ରହି କ୍ଷୁଧା ତୃଷାର ତାଡ଼ନା ସମ୍ପୂର୍ଣ୍ଣ ଭୁଲିଗଲେ । ନିଦ୍ରା କମ୍ବା ଆଳସ୍ୟ ତାଙ୍କର ଧ୍ୟାନ ଭଙ୍ଗ କରିବାକୁ ଅକ୍ଷମ ହେଲା । ଭଗବାନଙ୍କ ପ୍ରତି ଦୃଢ଼ ନିଷ୍ଠା ହେତୁ ସେ ଚତୁର୍ଦ୍ଦଶ ଦିବସ ଏହିପରି ଅତିବାହିତ କରିବାକୁ ସମର୍ଥ ହୋଇଥିଲେ ।

ଏହିପରି ଭକ୍ତ ତ ଭଗବାନଙ୍କର ଅତ୍ୟନ୍ତ ପ୍ରିୟ ! ରଘୁ ଦାସଙ୍କର କଠୋର ତପସ୍ୟାରେ ଜଗନ୍ନାଥଙ୍କ ରତ୍ନ ସିଂହାସନ ଥରିବାକୁ ଲାଗିଲା । ଭକ୍ତର ମନୋବାଞ୍ଛା ପୂରଣ କରିବାପାଇଁ ଯେଉଁ ଜଗନ୍ନାଥ ବାହୁ ବିସ୍ତାର କରି ରତ୍ନ ସିଂହାସନ ଉପରେ ବସି ଅଛନ୍ତି, ସେ ଆଉ ସ୍ଥିର ହୋଇ ରହି ପାରିଲେନାହିଁ । ଚତୁର୍ଦ୍ଦଶ ଦିବସ ରାତ୍ରିରେ ସେ ଖୋର୍ଦ୍ଧାର ତତ୍କାଳୀନ ମହାରାଜାଙ୍କୁ ସ୍ୱପ୍ନ ମାର୍ଗରେ ଦର୍ଶନ ଦେଇ କହିଲେ—

"× × ଶୁଣରେ ରାଉତ । ପଶ୍ଚିମ ଦେଶ ମୋ ଭକତ ।
ଆସିଣ ଶ୍ୱେତଗଙ୍ଗାଠାରେ । ମୋର ଦକ୍ଷିଣ ପାରୁଶରେ ।
ଘୋର ତପସ୍ୟା କରେ ବସି । ମୋ ନାମ ଜପି ଅହର୍ନିଶି ।
ଅନ୍ନଭୋଜନ ନାହିଁ ତାର । ମୋ ପାଦେ ଦେଇ ଶରୀର ।

ହେଲାଣି ଚଉଦ ଦିବସ । ତେଣୁ ଅଇଲି ତୋର ପାଶ ।
ସେ ମୋର କୁଟୁମ୍ବରୁ ଜଣେ । ଏହାହିଁ ବୁଝି ହେ ଆପଣେ ।
ଦେଖି ତା ତପସ୍ୟା କଠୋର । ଅନ୍ନ ଭୋଜନ ନାହିଁ ମୋର ।
ସେ ମୋ ବାଳୁତ ପୁତ୍ର ପ୍ରାୟେ । ତାର ବ୍ୟାକୁଳ ସହ୍ୟ ନୋହେ ।
ଏଣୁ ମୁଁ କହୁଅଛି ତୋତେ । ହେ ରାଜା ଭଲେ ରଖ ଚିତ୍ତେ ।
ରଜନୀ ପ୍ରଭାତରୁ ଯିବୁ । ମୋ ଭକ୍ତ ପାଶରେ ମିଳିବୁ ।
ଅନେକ ଗଉରବ କରି । ଘେନାଇ ଯିବୁ ଦଣ୍ଡଧାରି ।
ଏ ମୋର ଦକ୍ଷିଣ ପାରୁଶ । ବିସ୍ତାର କରିଣ ନିବାସ ।
ତୋଳାଇ ଦେବୁ ହେ ରାଜନ । ଖଞ୍ଜିବୁ ଖଞ୍ଜା ବଇତନ ।”

(ଦାର୍ଢ୍ୟତା ଭକ୍ତି)

ରାଜାଙ୍କୁ ଏପରି ନିର୍ଦ୍ଦେଶ ଦେଇ ପ୍ରଭୁ ଜଗନ୍ନାଥ ସ୍ୱପ୍ନ ପଟରୁ ଅନ୍ତର୍ହିତ ହୋଇଗଲେ । ତତ୍‌କ୍ଷଣାତ୍ ରାଜାଙ୍କର ନିଦ୍ରାଭଙ୍ଗ ହେବାରୁ ସେ ସଙ୍ଗେ ସଙ୍ଗେ ଉଠି ପଡ଼ିଲେ ଏବଂ ସ୍ୱପ୍ନରେ ଜଗନ୍ନାଥଙ୍କର ଦର୍ଶନ ପାଇଥିବାରୁ ନିଜର ଭାଗ୍ୟକୁ ବାରମ୍ବାର ପ୍ରଶଂସା କରିବାକୁ ଲାଗିଲେ । ଭକ୍ତପ୍ରତି ଭଗବାନଙ୍କର ଯେ କି ଅସୀମ କରୁଣା, ତାହା ଚିନ୍ତାକରିବା ମାତ୍ରେ ତାଙ୍କର ଚକ୍ଷୁଦ୍ୱୟ ଆନନ୍ଦାଶ୍ରୁରେ ଭରିଗଲା ।

ତତ୍‌ପରଦିନ ପ୍ରଭାତରେ ସେ ଅଶ୍ୱ ଆରୋହଣ କରି ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କଲେ ଏବଂ ଶ୍ୱେତଗଙ୍ଗା ନିକଟରେ ଉପନୀତ ହୋଇ ତପସ୍ୟାରତ ରଘୁଦାସଙ୍କୁ ଦେଖିବାକୁ ପାଇଲେ । ରଘୁଦାସଙ୍କର କଠୋର ତପସ୍ୟା ଦେଖି ତାଙ୍କର ମସ୍ତକ ଆପେଆପେ ଅବନତ ହୋଇଗଲା । ସେ ରଘୁଦାସଙ୍କୁ ଧ୍ୟାନଭଗ୍ନ କରାଇ ଆଲିଙ୍ଗନ କଲେ ଏବଂ ସ୍ୱପ୍ନରେ ଦେଇଥିବା ଜଗନ୍ନାଥଙ୍କର ନିର୍ଦ୍ଦେଶ ତାଙ୍କୁ ଶୁଣାଇଦେଲେ । ରଘୁଦାସ ଜଗନ୍ନାଥଙ୍କର କରୁଣା ବିଷୟ ସ୍ମରଣ କରି ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ତାହା ପରେ ମହାରାଜା ରଘୁ

ଦାସଙ୍କ ମସ୍ତକରେ ପାଟଶାଢ଼ୀ ବାନ୍ଧି ଓ ରାଜକୀୟ ସମ୍ମାନ ପ୍ରଦର୍ଶନ କରି ରାଜପ୍ରାସାଦକୁ ଫେରି ଆସିଲେ ।

ଯଥା ସମୟରେ ରାଜାଙ୍କର ଆଦେଶ ଅନୁଯାୟୀ ଶ୍ରୀମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ବତିଶ ବଖରା ବିଶିଷ୍ଟ ଗୋଟିଏ ଅତି ସୁନ୍ଦର ମଠ ନିର୍ମିତ ହେଲା । ସେହି ମଠର ପରିଚାଳନା ପାଇଁ ଅନେକଗୁଡ଼ିଏ ନିଷ୍କର ଜମି ଖଞ୍ଜି ଦିଆଗଲା ଏବଂ ମଠରେ ଯେଉଁମାନେ ବାସ କରିବେ, ସେମାନଙ୍କ ପାଇଁ ପ୍ରତ୍ୟହ ମହାପ୍ରସାଦର ବ୍ୟବସ୍ଥା କରାଗଲା । ତାହାପରେ ରାଜା ମଠଟିକୁ ରଘୁ ଦାସଙ୍କ ହସ୍ତରେ ଅର୍ପଣ କରି-ଦେଲେ ।

ରଘୁ ଦାସ ଏତେ ବଡ଼ ମଠର ଅଧିକାରୀ ହୋଇଥିଲେ ମଧ୍ୟ ତାଙ୍କ ମନରେ ସାମାନ୍ୟ ଟିକିଏ ବି ଗର୍ବ କିମ୍ବା ଅହଙ୍କାର ସ୍ଥାନ ପାଇ ନ ଥିଲା । ପୂର୍ବପରି ସେ ଭଜନ, କୀର୍ତ୍ତନ ଓ ତପସ୍ୟାରେ ମଗ୍ନ ରହି ସମୟ ଅତିବାହିତ କରୁଥିଲେ । ତାଙ୍କର ଏକନିଷ୍ଠ ଭକ୍ତିଭାବ ଦେଖି ଶ୍ରୀକ୍ଷେତ୍ରର ସମସ୍ତେ ଚମତ୍କୃତ ହୋଇଯାଉଥିଲେ । ତେଣୁ ଅତି ଶୀଘ୍ର ତାଙ୍କର ମହିମା ଚତୁର୍ଦ୍ଦିଗରେ ବ୍ୟାପିବାକୁ ଲାଗିଲା । ବିଭିନ୍ନ ସ୍ଥାନରୁ ବୈଷ୍ଣବମାନେ ଆସି ତାଙ୍କ ମଠରେ ଅବସ୍ଥାନ କଲେ । ରଘୁ ଦାସ ସମସ୍ତ ବୈଷ୍ଣବମାନଙ୍କୁ ସମାନ ଆଦର କରି ନିଜ ମଠରେ ଆଶ୍ରୟ ଦେଲେ ।

ରଘୁ ଦାସଙ୍କ ମଠର ନିୟମ ଥିଲା, ମଠରେ କୌଣସି ଖାଦ୍ୟ ବା ପାନୀୟ ପ୍ରସ୍ତୁତ ହେବନାହିଁ, ସମସ୍ତେ ଜଗନ୍ନାଥଙ୍କ ମହାପ୍ରସାଦ ଭୋଜନ କରି ସେଠାରେ ଅବସ୍ଥାନ କରିବେ, କେହି ବାହାରର କୌଣସି ଖାଦ୍ୟ ଭୋଜନ କରିବେ ନାହିଁ; ଯଦି ମହାପ୍ରସାଦ ବିନା ଆଉ କିଛି ଭୋଜନ କରିବାକୁ ପଡ଼େ, ତେବେ ତାହାକୁ ପ୍ରଥମେ ଜଗନ୍ନାଥଙ୍କ ନିକଟରେ ନୈବେଦ୍ୟ କରିବେ । ଏହିସବୁ ନିୟମର

ବଶବର୍ତ୍ତୀ ହୋଇ ବୈଷ୍ଣବମାନେ ରଘୁଦାସଙ୍କ ସହିତ ବସବାସ କଲେ । ସେଠାରେ ବିବାଦ୍ର ସବୁବେଳେ କେବଳ ଭଜନ କୀର୍ତ୍ତନ ଲାଗି ରହିଲା ।

ମଠରେ ଅବସ୍ଥାନ କରୁଥିବା ସମସ୍ତ ବୈଷ୍ଣବମାନଙ୍କ ମଧ୍ୟରେ ରଘୁଦାସଙ୍କର ଭକ୍ତି ଥିଲା ଭିନ୍ନ ଧରଣର । ଥରେ ମାତ୍ର ନାମ ଉଚ୍ଚାରଣ କରିବା ମାତ୍ରେ ତାଙ୍କର ଶରୀର ପୁଲକରେ ଭରି ଯାଉଥିଲା, ଚକ୍ଷୁରୁ ଝରି ଆସୁଥିଲା ଧାର ଧାର ହୋଇ ଆନନ୍ଦାଶ୍ରୁର ଝରଣା, ସେ ଭାବମଗ୍ନ ଅବସ୍ଥାରେ ସମାଧିସ୍ଥ ହେଉଥିଲେ । ଏପରି ଉଚ୍ଚଭାବାପନ୍ନ ଅବସ୍ଥାରେ ଥାଇ ମଧ୍ୟ ତାଙ୍କର ହୃଦୟ ବେଳେ ବେଳେ ବ୍ୟାକୁଳତାରେ ଭରି ଯାଉଥିଲା ! ଜଗନ୍ନାଥଙ୍କୁ ଥରେ ଦର୍ଶନ କରିବାପାଇଁ ସେ ବ୍ୟସ୍ତ ହୋଇ ପଡ଼ୁଥିଲେ ।

ଦିନେ ତାଙ୍କ ଜୀବନରେ ସେହି ସୌଭାଗ୍ୟର ସମୟ ଆସି ଉପସ୍ଥିତ ହେଲା । ଜଗନ୍ନାଥ ମହାପ୍ରଭୁ ଭକ୍ତର ମନୋବାଞ୍ଛା ପୂରଣ କରିବାପାଇଁ ଭକ୍ତ ସମ୍ମୁଖରେ ଆବିର୍ଭୂତ ହେଲେ । ଧ୍ୟାନସ୍ଥ ରଘୁଦାସ ନେତ୍ର ଖୋଲି ଦେଖିଲେ, ତାଙ୍କ ସମ୍ମୁଖରେ କୋଟି ବ୍ରହ୍ମାଣ୍ଡର ଅଧୀଶ୍ୱର, ମୁନିଜନ ଦୁର୍ଲ୍ଲଭ, ପରମ କାରୁଣିକ, ଭକ୍ତବତ୍ସଳ ଜଗନ୍ନାଥ ଦଣ୍ଡାୟମାନ । ଜଗନ୍ନାଥଙ୍କର ସ୍ମିତହାସ୍ୟ ତାଙ୍କର ସମଗ୍ର ଦୁଃଖ, ଶୋକ, ପାପ, ତାପ ଦୂର କରିଦେଲା । ସେ ବାକ୍‌ରୁଦ୍ଧ ଅବସ୍ଥାରେ ଜଗନ୍ନାଥଙ୍କ ପାଦପଦ୍ମରେ ଲୋଟି ପଡ଼ିଲେ ।

ଜଗନ୍ନାଥ ମହାପ୍ରଭୁ ଭକ୍ତର ଭାବବିହ୍ୱଳତା ଦେଖି ଆଶୀର୍ବାଦ-ପୂର୍ବକ କହିଲେ—"ହେ ମୋର ପ୍ରିୟ ଭକ୍ତ ! ତୁମର ମନୋବାଞ୍ଛା ପୂରଣ କରିବା ପାଇଁ ଆଜି ମୁଁ ତୁମ ସମ୍ମୁଖରେ ଦଣ୍ଡାୟମାନ । ଅତଏବ୍ ତୁମର ଯଦି କୌଣସି ଅଭିଳାଷ ଥାଏ, ତେବେ ତାହା ପ୍ରକାଶ କରି ମୋର ଆଶୀର୍ବାଦ ଲାଭକର ।"

ରଘୁ ଦାସ ଜଗନ୍ନାଥଙ୍କ ପାଦସ୍ପର୍ଶ କରିଲେ—"ହେ ପ୍ରଭୁ ! ସୌଭାଗ୍ୟକୁ ଆପଣଙ୍କର ଦର୍ଶନ ଲାଭକଲି, ସେତିକ ହିଁ ମୋ ପାଇଁ ଯଥେଷ୍ଟ । ଆପଣଙ୍କର ଦର୍ଶନ ପାଇ ମୋର ଜନ୍ମ ଜନ୍ମାନ୍ତରର ପାପ ଦୂରୀଭୂତ ହୋଇଗଲା, ମୋର ସମସ୍ତ ଆଶା ପୂର୍ଣ୍ଣ ହୋଇଗଲା । ମୋର ଆଉ କିଛି କାମନା ନାହିଁ ପ୍ରଭୁ ! କେବଳ ଆପଣଙ୍କର ଶାନ୍ତିମୟ କୋଳରେ ଆଶ୍ରୟ ପାଇବି, ତାହାହିଁ ମୋର ଅନ୍ତିମ ଅଭିଳାଷ ।"

ଭଗବାନ ଭକ୍ତଙ୍କୁ "ତଥାସ୍ତୁ" କହି ଅନ୍ତର୍ଦ୍ଧାନ ହୋଇଗଲେ ।

ରଘୁ ଦାସ ଜୀବନର ବାକି ଅଂଶତକ କେବଳ ଭଜନ, କୀର୍ତ୍ତନରେ ଅତିବାହିତ କରି ସର୍ବଶେଷରେ ଜଗନ୍ନାଥଙ୍କର ଶାନ୍ତିମୟ କୋଳରେ ଆଶ୍ରୟ ପାଇଲେ ।

ମୁକ୍ତିଦାତା ଜଗନ୍ନାଥ ! ତୁମର ସାମାନ୍ୟ କରୁଣା କଟାକ୍ଷରେ ଜୀବ ସମସ୍ତ ଭବ-ବନ୍ଧନରୁ ମୁକ୍ତହୋଇ ମୁକ୍ତିପଥର ଯାତ୍ରୀ ହୁଏ । ତୁମ କରୁଣାର ମହିମା ପ୍ରକାଶ କରିବାପାଇଁ କୌଣସି ଭାଷା ସମର୍ଥ ନୁହେଁ । କାରଣ ତୁମେ ନିଜେ ହିଁ ତ 'ଅବାଙ୍ମାନସ ଗୋଚର' !!

# ବିଷ୍ଣୁପ୍ରିୟା ଓ ଶ୍ରୀ ଜଗନ୍ନାଥ

"ଯଦ୍ୟପି ଭକତ ଅଗ୍ରତେ । ଯେ କିଛି ଲଭେ ଅକସ୍ମାତେ
× × ×
ସେ ଯେବେ ରେଣୁମାନ ଦେଇ । ମୁଁ ତାହା ବହୁତ ଘେନଇ ।
ଯେ ମେରୁ ତୁଲ୍ୟ ନାନା ଦ୍ରବ୍ୟ । ମୋତେ ସମର୍ପିଲ ଅଭାବେ ।
ଶ୍ରଦ୍ଧା ନଥାଇ ଅନ୍ତରେତେ । ମୁଁ ତାହା ଛୁଇଁବି କେମନ୍ତେ" ।
( ଶ୍ରୀମଦ୍‌ଭାଗବତ : ଏକାଦଶ ସ୍କନ୍ଧ )

ଭକ୍ତାଧୀନ ଭଗବାନ କେବଳ ଭକ୍ତାର୍ପିତ ବସ୍ତୁରେ ହିଁ ଆଶା-ପୋଷଣ କରିଥାନ୍ତି । ଭକ୍ତ ଭଗବାନଙ୍କୁ ଭକ୍ତିଭାବରେ ଯାହା କିଛି ଅର୍ପଣ କରେ, ଭଗବାନ ତାହା ତତ୍‌କ୍ଷଣାତ୍ ଗ୍ରହଣ କରନ୍ତି । ଭଗବାନଙ୍କୁ ସନ୍ତୁଷ୍ଟ କରିବାପାଇଁ ଭକ୍ତି ହିଁ ଏକମାତ୍ର ଉପାୟ । ଶ୍ରଦ୍ଧାହୀନ ହୃଦୟରେ ଭଗବାନଙ୍କୁ ଯାହା ଅର୍ପଣ କରାଯାଏ, ସେଥିରେ ଭକ୍ତିଭାବ ନଥାଏ; ତେଣୁ ଭଗବାନ ତାହା ଗ୍ରହଣ କରନ୍ତି ନାହିଁ । ହୃଦୟରେ ଭକ୍ତିଭାବ ନଥାଇ ମେରୁ ସଦୃଶ ମୂଲ୍ୟବାନ ପଦାର୍ଥ ଭଗବାନଙ୍କୁ ଅର୍ପଣକଲେ ମଧ୍ୟ ଭଗବାନ ସେଥିପ୍ରତି କିଞ୍ଚିତ୍ ଦୃଷ୍ଟିପାତ କରନ୍ତିନାହିଁ । ଅନ୍ୟପକ୍ଷରେ ଭକ୍ତିପୂର୍ଣ୍ଣ ହୃଦୟରେ ତୃଣସଦୃଶ ମୂଲ୍ୟହୀନ ପଦାର୍ଥ ଭଗବାନଙ୍କୁ ଅର୍ପଣକଲେ ମଧ୍ୟ ତାହାକୁ ସେ ଆନନ୍ଦର ସହିତ ଗ୍ରହଣ କରନ୍ତି । ଏହାହିଁ

ଭଗବାନଙ୍କର ଭକ୍ତପ୍ରିୟତା ! ଏହାହିଁ ଭଗବାନଙ୍କର ଭକ୍ତ-ବତ୍ସଳତା !!

ବିଷ୍ଣୁପ୍ରିୟା ଥିଲେ ଜଣେ ନାରୀ । ନାରୀହୋଇ ମଧ୍ୟ ନିଜର ଅନନ୍ୟ ଭକ୍ତିବଳରେ ସେ କିପରି ଜଗନ୍ନାଥ ମହାପ୍ରଭୁଙ୍କର ହୃଦୟକୁ ନିଜର କରିପାରିଥିଲେ, ତାହା ତାଙ୍କର ଅମର ଜୀବନଚରିତରୁ ସହଜରେ ଅନୁମିତ ହୁଏ ।

ପବିତ୍ର ବୃନ୍ଦାବନର ପଶ୍ଚିମରେ ଅବସ୍ଥିତ ଦିଲ୍ଲୀ ସହର ନିକଟବର୍ତ୍ତୀ ଜୟନଗର ରାଜ୍ୟ । ସେହି ରାଜ୍ୟର ଶାସନକର୍ତ୍ତା ଥିଲେ ରାଜା ଜୟସିଂହ । ଶକ୍ତି, ସାମର୍ଥ୍ୟ, ଦୟା, କ୍ଷମା, ପାଣ୍ଡିତ୍ୟ ଆଦି ବିଭିନ୍ନ ଗୁଣରେ ବିଭୂଷିତ ହୋଇ ସେ ପ୍ରଜାମାନଙ୍କୁ ନିଜର ସନ୍ତାନପରି ପାଳନ କରୁଥିଲେ । ତାଙ୍କ ରାଣୀଙ୍କର ନାମଥିଲା ଚନ୍ଦ୍ରାବତୀ । ସ୍ୱାମୀଙ୍କପରି ସେ ମଧ୍ୟ ବିଭିନ୍ନ ସୁଗୁଣରେ ମଣ୍ଡିତା ହୋଇ ପ୍ରଜାମାନଙ୍କର ଆଦର୍ଶସ୍ଥାନୀୟା ହୋଇ ପାରିଥିଲେ । ରାଜା ଜୟସିଂହଙ୍କ ଔରସରେ ରାଣୀ ଚନ୍ଦ୍ରାବତୀଙ୍କ ଗର୍ଭରୁ ଯେଉଁ କନ୍ୟାରତ୍ନ ଜନ୍ମଲାଭ କରିଥିଲେ, ତାଙ୍କୁ ବିଷ୍ଣୁପ୍ରିୟା ନାମରେ ନାମିତ କରାଯାଇଥିଲା । ଚନ୍ଦ୍ରକଳା ନ୍ୟାୟରେ ବୃଦ୍ଧି ଲାଭକରି ସେ ଯେତେବେଳେ ଯୌବନରେ ପଦାର୍ପଣ କଲେ, ସେତେବେଳେ ତାଙ୍କ ସୌନ୍ଦର୍ଯ୍ୟର ଅପରୂପ ଶୋଭା ବର୍ଣ୍ଣନାକରିବା ଅସମ୍ଭବ ହୋଇପଡ଼ିଲା । ସେ କେବଳ ସୌନ୍ଦର୍ଯ୍ୟବତୀ ନଥିଲେ, ସେ ଥିଲେ ହରିଭକ୍ତିପରାୟଣା । ଅତି ବାଲ୍ୟକାଳରୁ ତାଙ୍କ ମଧ୍ୟରେ ଅଭୁତ ଭକ୍ତିଭାବ ସଂସ୍ଫୁରିତ ହୋଇଥିଲା । ସତେ ଯେପରି ଭକ୍ତିଭାବ ନେଇ ସେ ଏ ସଂସାରରେ ଜନ୍ମଲାଭ କରିଥିଲେ ! ବାଲ୍ୟକାଳରେ ମଧ୍ୟ ତାଙ୍କ ମଧ୍ୟରେ କୌଣସି ବାଲ୍ୟ-ଚପଳତା ସ୍ଥାନ ପାଇନଥିଲା । କେବଳ ହରିକଥା ଶ୍ରବଣ ଓ ହରିନାମ କୀର୍ତ୍ତନରେ ସେ ବାଲ୍ୟ ଓ କୈଶୋର-ସମୟ ଅତିବାହିତ କରିଦେଇଥିଲେ । ସାଧୁ ସନ୍ନ୍ୟାସୀମାନଙ୍କୁ ସେ

ରାଜ ନଅରକୁ ଡାକି ଆଣୁଥିଲେ ଏବଂ ସେମାନଙ୍କ ମୁଖରୁ ହରି-କଥା ଶ୍ରବଣକରି ତୃପ୍ତି ଲାଭ କରୁଥିଲେ । ତୀର୍ଥଯାତ୍ରୀଙ୍କଠାରୁ ବିଭିନ୍ନ ତୀର୍ଥର ମହିମା ଶୁଣିବାକୁ ମଧ୍ୟ ସେ ଖୁବ୍ ଭଲ ପାଉଥିଲେ । ଅମରନାଥ, ବଦ୍ରୀନାଥ, ବିଶ୍ୱନାଥ, ଜଗନ୍ନାଥ, ରାମେଶ୍ୱର, କନ୍ୟାକୁମାରୀ ଆଦି ବିଭିନ୍ନ ତୀର୍ଥ ସ୍ଥାନର ମହିମା ଶୁଣିବା ସମୟରେ ତାଙ୍କର ହୃଦୟ ଆନନ୍ଦରେ ପୂର୍ଣ୍ଣ ହୋଇଯାଉଥିଲା । ବିଶେଷ କରି ଜଗନ୍ନାଥ ମହାପ୍ରଭୁଙ୍କ ମହିମା ଶୁଣି ତାଙ୍କର ଶରୀର ରୋମାଞ୍ଚିତ ହୋଇଉଠୁଥିଲା ! ସେ ଜଗନ୍ନାଥଙ୍କ ମହିମାରେ ଅଭିଭୂତ ହୋଇ ଧାର ଧାର ଲୋତକ ନୟନଦ୍ୱୟରୁ ଝରାଇ ଦେଉଥିଲେ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କର ଦର୍ଶନ ପାଇବା ପାଇଁ ସେ ବ୍ୟାକୁଳ ହୋଇ ପଡ଼ିଲେ —

"ଶ୍ରୀଜଗନ୍ନାଥଙ୍କ ଚରିତ । ବାରମାସରେ ତେରଯାତ ।
ଯେତେ ବେଳରେ ଯେଉଁ ଶୋଭା । ବେଶ ବସନ ଆଦି ସେବା ।
ଶ୍ରୀମହାପ୍ରସାଦ ମହିମା । ଯେ ପାଞ୍ଚକୋଶ ପରିକ୍ରମା ।
ଶ୍ରୀଜଗତମୋହନ ଚରିତ । ଯେବେ ଶୁଣଇ ଶ୍ରୁତିପଥ ।
ମନେ ଆନନ୍ଦ ହୁଏ ଯେତେ । ତାହା କେ କହିବ ଯୁକତେ ।
ହୃଦୟ ହୁଏ ଦ୍ରବୀଭୂତ । ଧ୍ୟାନେ ଚିନ୍ତଇ ଜଗନ୍ନାଥ ।
ଈଶ୍ୱର କରୁଥାଏ ମନ । କେବେ ଦେଖିବି ଭଗବାନ ।
ଦର୍ଶନେ ପୂର୍ବ ପାପ ତୁଟି । ଜୀବ ବନ୍ଧନ ଯିବ ଫିଟି ।
ପୁଣି ବୋଲଇ ସ୍ତୁତି ରି ସ୍ୱର । ସୁଭାଗ୍ୟ ହେବନାହିଁ ମୋର ।
ସ୍ୱପନେ ହେଲେ ଏକଦିନେ । ଦେଖିବି ମୋ ଚର୍ମ ନୟନେ ।
ଏ କୃପା କରିବେ କି ହରି । ବୋଲି ନୟନୁ ବହେ ବାରି ।"

( ଦାର୍ଢ୍ୟତା ଭକ୍ତି )

ବାସ୍ତବିକ୍ ବିଷ୍ଣୁପ୍ରିୟାଙ୍କର ଭକ୍ତିଭାବ ଥିଲା ଅତି ଉଚ୍ଚ ଧରଣର !

ପୁରୀର ପଣ୍ଡାମାନେ ଜଗନ୍ନାଥଙ୍କର ସେବାର୍ଚ୍ଚନା କରିବା ଛଡ଼ା ଯାତ୍ରୀ ବ୍ୟବସାୟ ମଧ୍ୟ କରନ୍ତି । ସେମାନେ ଜଗନ୍ନାଥଙ୍କ ମହାପ୍ରସାଦ ସାଙ୍ଗରେ ଧରି ଭାରତର ବିଭିନ୍ନ ସ୍ଥାନକୁ ଗମନ କରନ୍ତି ଏବଂ ଯାତ୍ରୀମାନଙ୍କୁ ତାହା ପ୍ରଦାନ କରି ପ୍ରଚୁର ଧନ ରୋଜଗାର କରନ୍ତି । ତାହାଛଡ଼ା ସେମାନେ ଯାତ୍ରୀମାନଙ୍କୁ ପୁରୀ ଆଣି ଜଗନ୍ନାଥଙ୍କ ଦର୍ଶନ ମଧ୍ୟ କରାଇଦଅନ୍ତି ।

ବନ୍ଧୁ ମହାପାତ୍ର ନାମରେ ଜଣେ ଯାତ୍ରୀ ବ୍ୟବସାୟୀ ଥରେ ଜୟନଗରରେ ପହଞ୍ଚି ବିଷ୍ଣୁପ୍ରିୟାଙ୍କର ଭକ୍ତିଭାବ ବିଷୟରେ ଶୁଣିବାକୁ ପାଇଲେ । ବିଷ୍ଣୁପ୍ରିୟା ରାଜକୁମାରୀ ଥିବାରୁ ତାଙ୍କଠାରୁ ବହୁଧନ ଆଶାକରି ସେ ଯାଇ ରାଜ ନଅରରେ ଉପସ୍ଥିତ ହେଲେ ଏବଂ ବିଷ୍ଣୁପ୍ରିୟାଙ୍କ ପାଖକୁ ଗୋଟିଏ ପତ୍ର ଲେଖି ପଠାଇଲେ । ସେହି ପତ୍ରରେ ଲେଖାଥିଲା—

"ଶ୍ରୀଜଗନ୍ନାଥଙ୍କ ନିମନ୍ତେ । ଯେ ଶ୍ରଦ୍ଧା ହେଉ ତୁମ୍ଭଚିତ୍ତେ ।
ଦେଲେ ତା ଆମ୍ଭେ ନେଇଯିବୁ । ପ୍ରଭୁ ଛାମୁରେ ନେଇ ଦେବୁ ।"

ପତ୍ର ପଢ଼ି ବିଷ୍ଣୁପ୍ରିୟା ଆନନ୍ଦରେ ଅଧୀର ହୋଇପଡ଼ିଲେ । ପତ୍ରରେ ଜଗନ୍ନାଥଙ୍କ ନାମ ଦେଖି ତାଙ୍କ ଚକ୍ଷୁଦ୍ୱୟରୁ ଧାରଧାର ଲୋତକ ଝରିବାକୁ ଲାଗିଲା । ମନଶ୍ଚକ୍ଷୁରେ ସେ ଦେଖିବାକୁ ପାଇଲେ ଜଗନ୍ନାଥଙ୍କର ଅପରୂପ ସୌନ୍ଦର୍ଯ୍ୟ; କିନ୍ତୁ ପରକ୍ଷଣରେ ସେ ଚିନ୍ତା କଲେ—

"କି ବୁଦ୍ଧି ଏବେ କରିବଇଁ । ବିଷମ ଦୁଃଖେ ପଡ଼ିଲଇଁ ।
କି ଦ୍ରବ୍ୟ ଦେବି ତାଙ୍କ ପାଶ । ତାଙ୍କୁ ଅପୂର୍ବ ଅବା କିସ ।
ପରମ ଲକ୍ଷ୍ମୀ ଯା ଘରଣୀ । ପାଶେ ବସନ୍ତି ଅନୁକ୍ଷଣି ।
ଯା ପଟରାଣୀ ଅଷ୍ଟନିଧି । ଯାହାର ଆଜ୍ଞାକାରୀ ବିଧି ।
ସମସ୍ତ ରତ୍ନର ଆକର । ଯାହାର ନାମ ରତ୍ନାକର ।

ତାଙ୍କୁ କି ରତ୍ନ ଦେବ ଅବା । ଏ କଥା ନ ହଶିବ ଶୋଭା ।
ଯା ତନ୍ତୁଁ ଫସାରେ ସଞ୍ଚାର । ହେତୁ ବୋଲୁଏ ବିଶ୍ୱମ୍ଭର ।
ତାହାଙ୍କୁ ଦେବ ଅବା କିସ । ଏଣୁ ହୋଇବ ବଡ଼ ହାସ୍ୟ ।
କୌସ୍ତୁଭମଣି ଯାର ହାର । ଇତର ମଣି କେଉଁ ଛାର ।
ଅମୂଲ୍ୟ ଅଗୁରୁ ଚନ୍ଦନ । ଯାହାର ପୂଜାକୁ ଇନ୍ଧନ ।
ଯାର ବାହନ ଖଗରାଜ । ଆନ ଯାନରେ କିସ କାର୍ଯ୍ୟ ।
ଯାର ଶଯ୍ୟନ ନାଗରାଜେ । ସହସ୍ର ଫଣା ମଣି ଶୋହେ ।
ଫଣାକେ ଜ୍ୟୋତି ଯେ ବିରାଜେ । କି କାର୍ଯ୍ୟ ତାର ଆନ ଶେଯେ ।
ପାରିଜାତକ ଫୁଲମାଳା । ନିରନ୍ତେ ଶୋହେ ଯାର ଗଳା ।
ଗଣ୍ଠା ହୋଇଲେ ଯୁଗ ଶତ । ମଳିନ ନୋହେ କଦାଚିତ ।
ବ୍ରହ୍ମାଣ୍ଡ ମୋହେ ଯାର ବାସ । ଅନ୍ୟ ଫୁଲ ତା କାର୍ଯ୍ୟ କିସ ।
ଯାର ନିବାସ ନୀଳାଚଳ । ଅମୂଲ୍ୟ ପରମ ମଙ୍ଗଳ ।
ଜଗତ ଶତବାର ନଷ୍ଟ । ହେଲେ ନ ଟଳେ ଯାର ପୀଠ ।
ଦର୍ଶନେ ପ୍ରାଣୀ ପାପ ହରେ । ଅନ୍ୟ କି ପୀଠ ଦେବି ତାରେ ।

× × × ×

ଗଙ୍ଗା ଯା ଚରଣ ଉଦକ । ଯହିଁ ଶରଣ ତିନି ଲୋକ ।
ତାକୁ ଅପୂର୍ବ ଅବା କିସ । ନାହିଁ ନୋହିବେ ଚତୁର୍ଦ୍ଦଶ ।"

(ଦାର୍ଢ୍ୟତା ଭକ୍ତି)

ଏହିପରି ଚନ୍ଦ୍ରାକର ବିଷ୍ଣୁପ୍ରିୟା ଦୁଃଖରେ ଅଭିଭୂତା ହୋଇପଡ଼ିଲେ; ମାତ୍ର ପରକ୍ଷଣରେ ସେ ଜଗନ୍ନାଥଙ୍କୁ ପ୍ରାର୍ଥନା କରି କହିଲେ—"ହେ ପ୍ରଭୁ ! ହେ ଜଗନ୍ନାଥ ! ତୁମ ପରି ଠାକୁରଙ୍କୁ ଭେଟି ଦେବାପାଇଁ ମୋ ପାଖରେ କ'ଣ ଅଛି ? ତୁମେ ତ ସମସ୍ତ ଐଶ୍ୱର୍ଯ୍ୟର ମୂଳ ଉତ୍ସ ! କିନ୍ତୁ ମୁଁ ଜାଣେ, ଦ୍ୱାପର ଯୁଗରେ ଗୋପୀଗଣ ତୁମର ମନ ହରଣ କରି ନେଇଯାଇଥିଲେ । ତୁମ ପାଖରେ ସବୁ

ଥିଲେ ମଧ୍ୟ ମନଟି ତ ନାହିଁ ! ଅତଏବ ହେ ପ୍ରଭୁ ! ମୁଁ ତୁମ୍ଭଙ୍କୁ ମୋର ମନ ପ୍ରଦାନ କରୁଛି । ତୁମେ ତାହା ଗ୍ରହଣ କରି ମୋ ଜୀବନକୁ କୃତାର୍ଥ କର ।"

ପ୍ରାର୍ଥନା ପରେ ବନ୍ଧୁ ପ୍ରିୟା ଉପରୋକ୍ତ ଭାବକୁ ନେଇ ଗୋଟିଏ ଶ୍ଳୋକ ରଚନା କଲେ ଏବଂ ସେହି ଶ୍ଳୋକଟିକୁ ଉପଯୁକ୍ତ ଜଉ-ମୁଦରେ ଆବଦ୍ଧପୂର୍ବକ ସଖୀକୁ ଡାକି କହିଲେ—"ହେ ସଖି ! ଶ୍ରୀକ୍ଷେତ୍ରରୁ ଯେଉଁ ପଣ୍ଡା ରାଜ ନଅରକୁ ବିଜେ କରିଛନ୍ତି, ତାଙ୍କୁ ଦଶଗୋଟି ସ୍ୱର୍ଣ୍ଣ ମୁଦ୍ରା ସହିତ ଏହି ଜଉମୁଦଟିକୁ ପ୍ରଦାନ କରି କହିବୁ, ସେ ନିଜେ ସ୍ୱର୍ଣ୍ଣମୁଦ୍ରାତକ ରଖି ଜଉମୁଦଟିକୁ ଜଗନ୍ନାଥଙ୍କ ପାଦପଦ୍ମରେ ଅର୍ପଣ କରିଦେବେ ।"

ରାଜ କୁମାରୀଙ୍କ ନିର୍ଦ୍ଦେଶ ପ୍ରାପ୍ତହୋଇ ସଖୀ ବନ୍ଧୁ ମହା-ପାତ୍ରଙ୍କ ନିକଟକୁ ଆସି ସବୁକଥା କହିଲା ଓ ଦଶଗୋଟି ସ୍ୱର୍ଣ୍ଣମୁଦ୍ରା ସହିତ ଜଉ ମୁଦଟିକୁ ପ୍ରଦାନ କଲା ! ବନ୍ଧୁ ମହାପାତ୍ର ତାହା ଗ୍ରହଣ-ପୂର୍ବକ ସେଠାରୁ ବିଦାୟ ନେଇ ଶ୍ରୀକ୍ଷେତ୍ର ପଥର ଯାତ୍ରୀ ହେଲେ; କିନ୍ତୁ ସେ ଥିଲେ ଅତ୍ୟନ୍ତ ଲୋଭୀ । ବନ୍ଧୁ ପ୍ରିୟାଙ୍କ ନିକଟରୁ ଦଶଗୋଟି ସ୍ୱର୍ଣ୍ଣମୁଦ୍ରା ପାଇ ମଧ୍ୟ ସେ ସନ୍ତୁଷ୍ଟ ହୋଇ ନ ଥିଲେ । ପଥ ମଧ୍ୟରେ ସେ ଚିନ୍ତାକଲେ, "ବୋଧହୁଏ ରାଜକୁମାରୀ ଏହି ଜଉମୁଦ ଭିତରେ ଅତି ମୂଲ୍ୟବାନ କୌଣସି ବସ୍ତୁ ରଖିଅଛି ।" ଏହା ଚିନ୍ତାକରି ସେ ଜଉମୁଦଟିକୁ ଖୋଲି ଦେଖିଲେ, ସେଥିରେ ଗୋଟିଏ ମାତ୍ର ଶ୍ଳୋକ ଲିଖିତ ହୋଇ ରହିଅଛି । ତାହାକୁ ଅତ୍ୟନ୍ତ ହେୟଜ୍ଞାନ କରି ସେ ତାହା ଦୂରକୁ ନିକ୍ଷେପ କଲେ; ମାତ୍ର ତାହା କି ନିକ୍ଷିପ୍ତ ହେବାର ବସ୍ତୁ ! ତାହା ଯେ ଜଗନ୍ନାଥ ମହାପ୍ରଭୁଙ୍କର ଅମୂଲ୍ୟ ସମ୍ପଦ !! ବନ୍ଧୁ ମହାପାତ୍ର କାହୁଁ ଜାଣିବେ, ସେହି ଶ୍ଳୋକରେ କି ପ୍ରେମଭାବ ପୂରି

ରହିଛନ୍ତି ? ସେ ଯେ ସାଧାରଣ ମନୁଷ୍ୟ ! ଭକ୍ତର ସ୍ୱର୍ଗୀୟ ପ୍ରେମ ଭାବକୁ ସେବା ବୁଝିବେ କପରି ? କିନ୍ତୁ ଜଗନ୍ନାଥ ଭକ୍ତର ପ୍ରେମ ଭାବକୁ କେବେ ଉପେକ୍ଷା କରନ୍ତିନାହିଁ । ତେଣୁ ବନ୍ଧୁ ମହାପାତ୍ର ଯେଉଁ ଶ୍ଳୋକଟିକୁ ହେୟ ଜ୍ଞାନକରି ଭୂମିରେ ନିକ୍ଷେପ କରିଥିଲେ, ତାହାକୁ ସେ ଅତି ଆଗ୍ରହର ସହିତ ତୋଳିଧରି ନିଜ ହୃଦୟରେ ସ୍ଥାନ ଦେଇଥିଲେ ।

ଯଥା ସମୟରେ ବନ୍ଧୁ ମହାପାତ୍ର ଶ୍ରୀକ୍ଷେତ୍ରକୁ ଫେରିଆସିଲେ । ସେଦିନ ରାତିରେ ସେ ସ୍ୱପ୍ନରେ ଦେଖିଲେ, ପ୍ରଭୁ ଜଗନ୍ନାଥ ତାଙ୍କୁ କହୁଛନ୍ତି—

"ରେ ବତ୍ସ !

ତୁ ଗଲୁ ଜୟପୁରନଗର । ଧନ ଅର୍ଜନେ ଆଶା ତୋର ।
ତୋତେ ଯା ମିଳିଲା ତୁ ନେଲୁ । ମୋ ଧନ ମୋତେ ତ ନଦେଲୁ ।
ସେ ବସ୍ତୁ ପ୍ରିୟା ଦେବା ଧନ । ସେ ମୋର ଅମୂଲ୍ୟ ରତନ ।
ଇତର ପ୍ରାୟେ ତାହା ଧରି । ଫିଙ୍ଗି ଯେ ଦେଲୁ ଦୂରକରି ।
ସେ ନୋହେ କାଗଜ ପତର । କେବଳ ଗଣ୍ଠିଧନ ମୋର ।
ତୁ ସିନା ଦେଲୁଟି ପକାଇ । ମୁଁ ତାହା ଛାଡ଼ିବି କିମ୍ପାଇ ।
ଦେଖାଇ ଅଇଲୁ ସେ ଲେଖ । ଗଳାରେ ବାନ୍ଧିଅଛୁ ଦେଖ ।
ଏବେ ତୁ ଏମନ୍ତ କରିବୁ । ସୁନା ପଦକ ଗଢ଼ାଇବୁ ।
ସେ ଲେଖା ତହିଁ ମଧ୍ୟେ ଦେଇ । ସୁବର୍ଣ୍ଣ ଶିକୁଳି ଲଗାଇ ।
ମୋ କଣ୍ଠେ ଲମ୍ବାଇବୁ ଯେବେ । ତେବେ ତୁ ଥିବୁ ସର୍ବଶୁଭେ ।"

(ଦାର୍ଢ୍ୟତା ଭକ୍ତି)

ଏପରି ନିର୍ଦ୍ଦେଶ ଦେଇ ଜଗନ୍ନାଥ ସ୍ୱପ୍ନପଟରୁ ଅଦୃଶ୍ୟ ହୋଇଗଲେ । ବନ୍ଧୁ ମହାପାତ୍ର ଶଯ୍ୟାତ୍ୟାଗ କରି ପ୍ରଥମେ ଭୟଭୀତ ହୋଇପଡ଼ିଥିଲେ ମଧ୍ୟ ଜଗନ୍ନାଥଙ୍କ ଦର୍ଶନ ହେବାରୁ ପରେ ଆନନ୍ଦ

ଅନୁଭବ କଲେ । ତତ୍ପରଦିନ ପ୍ରଭାତରେ ସେ ନିତ୍ୟକର୍ମ ସମାପ୍ତ କରି ଶ୍ରୀମନ୍ଦିରକୁ ଗମନ କଲେ ଏବଂ ରତ୍ନସିଂହାସନ ନିକଟରେ ଛିଡ଼ା ହୋଇ ଦେଖିଲେ, ସେ ଯେଉଁ ଶ୍ଳୋକଟିକୁ ହେୟଜ୍ଞାନ କରି ପଥ ମଧ୍ୟରେ ଫିଙ୍ଗି ଦେଇଥିଲେ, ତାହା ଜଗନ୍ନାଥଙ୍କ ହୃଦୟରେ ଅତ୍ୟନ୍ତ ଶୋଭା ପାଉଅଛି । ଏହା ଦେଖି ତାଙ୍କର ଚକ୍ଷୁଦ୍ୱୟ ଛଳଛଳ ହୋଇ-ଗଲା । ସେ ବନ୍ଧୁ ପ୍ରିୟାଙ୍କର ଭକ୍ତିଭାବ ଅନୁଭବ କରି ନିଜକୁ ଅପରାଧୀ ବୋଲି ମନେ କଲେ ଏବଂ ସେଥିପାଇଁ ଜଗନ୍ନାଥଙ୍କ ନିକଟରେ ବାରମ୍ବାର କ୍ଷମା ପ୍ରାର୍ଥନା କଲେ ।

ତାହାପରେ ସେ ଜଗନ୍ନାଥଙ୍କ କଣ୍ଠରୁ ଶ୍ଳୋକଟିକୁ ନେଇ ଗୋଟିଏ ସୁନା ପଦକ ଗଢ଼ାଇଲେ ଓ ସେଥିରେ ଶ୍ଳୋକଟିକୁ ସ୍ଥାପନ କଲେ । ଉତ୍ତମ ଭାବରେ ନିର୍ମିତ ସେହି ପଦକଟି ସୁବର୍ଣ୍ଣ ଶିକୁଳିରେ ଆବଦ୍ଧ କରାଯାଇ ଜଗନ୍ନାଥଙ୍କ କଣ୍ଠ ଦେଶରେ ଲମ୍ବାଇ ଦିଆଗଲା । ପ୍ରଭୁ ଜଗନ୍ନାଥ ସେହି ଶ୍ଳୋକଯୁକ୍ତ ସୁବର୍ଣ୍ଣ ପଦକଟି ହୃଦୟରେ ଧାରଣ କରି ନିଜର ଭକ୍ତବତ୍ସଳ ନାମକୁ ସାର୍ଥକ କଲେ ।

ସେଦିନ ଉତ୍କଳୀୟ ଜନତା ଜଗନ୍ନାଥଙ୍କର ଭକ୍ତବତ୍ସଳତା ଦେଖି ଯେତିକି ଚମତ୍କୃତ ହେଉଥିଲେ, ବନ୍ଧୁ ପ୍ରିୟାଙ୍କର ଅନନ୍ୟ ଭକ୍ତିଭାବ ସ୍ମରଣକରି ସେତିକି ଆନନ୍ଦ ଅନୁଭବ କରୁଥିଲେ । ବାସ୍ତବରେ ଜଗନ୍ନାଥଙ୍କର କୀର୍ତ୍ତି ଯେପରି ବ୍ୟାପକ; ସେହିପରି ମହାନ୍ !



# ଉତ୍କଳୀୟ ସାଧକ ଓ ଶ୍ରୀଜଗନ୍ନାଥ

"ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ
ଅହଂ ତ୍ୱାଂ ସର୍ବ ପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ।"
(ଶ୍ରୀମଦ୍ଭଗବଦ୍ ଗୀତା, ୧୮।୬୬)

ଭଗବାନ ଶ୍ରୀକୃଷ୍ଣ କହୁଛନ୍ତି—"ହେ ଅର୍ଜୁନ ! ତୁମେ ସମସ୍ତ ପ୍ରକାର ଧର୍ମ ପରିତ୍ୟାଗ କରି ମୋର ଶରଣାପନ୍ନ ହୁଅ; ମୁଁ ତୁମକୁ ସମସ୍ତ ପାପରୁ ଉଦ୍ଧାର କରି ମୋକ୍ଷ ପ୍ରଦାନ କରିବି ।"

ଶ୍ରୀମଦ୍ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଯେଉଁ ଚାରି ପ୍ରକାର ଭକ୍ତଙ୍କର ବର୍ଣ୍ଣନା କରିଛନ୍ତି, ସେମାନଙ୍କ ମଧ୍ୟରେ ଆର୍ତ୍ତଭକ୍ତ ଅନ୍ୟତମ । ଯେତେବେଳେ ଜୀବ ଘୋର ବିପଦରେ ପଡ଼ି ଅନ୍ୟଠାରୁ କୌଣସି ସାହାଯ୍ୟ ନପାଏ, ସେତେବେଳେ ସେ ସର୍ବଦୁଃଖହର ଭଗବାନଙ୍କ ପାଦପଦ୍ମରେ ଆଶ୍ରୟ ଗ୍ରହଣ କରିବାକୁ ବାଧ୍ୟ ହୁଏ । ଆର୍ତ୍ତ ଭକ୍ତର ଆର୍ତ୍ତ ଚିତ୍କାରରେ ଭଗବାନ ସ୍ଥିର ହୋଇନପାରି ସଙ୍ଗେ ସଙ୍ଗେ ଭକ୍ତର ବିପଦ ଦୂର କରିଦିଅନ୍ତି । କେବଳ ସେତିକି ନୁହେଁ, ଭକ୍ତକୁ ବିପଦରୁ ରକ୍ଷାକରିବା ସଙ୍ଗେ ସଙ୍ଗେ ସେ ଭକ୍ତର ସମସ୍ତ ପାପ ଦୂରକରି ତାକୁ ମୋକ୍ଷ ପଥରେ ପରିଚାଳିତ କରନ୍ତି । ଗଜ, ମୃଗୁଣୀ, ଦ୍ରୌପଦୀ ଆଦି ପୁଣ୍ୟାତ୍ମା ମାନଙ୍କୁ ସେ ଯେପରି ବିପଦରୁ ଉଦ୍ଧାର କରିଥିଲେ, ତାହା ଅଳ୍ପ ବହୁତ ପ୍ରାୟ ସମସ୍ତେ ଜାଣନ୍ତି ।

ଉତ୍କଳର ରାଷ୍ଟ୍ରଦେବତା ଜଗନ୍ନାଥ ଏକାନ୍ତ ଭାବରେ ଭକ୍ତପ୍ରିୟ ହୋଇଥିବାରୁ ଭକ୍ତଉପରେ ବିପଦ ପଡ଼ିବା ମାତ୍ରେ, ତାହା ଦୂର କରିବା ପାଇଁ ସଙ୍ଗେ ସଙ୍ଗେ ସେ ଆଗେଇ ଆସନ୍ତି । ଏଠାରେ ଆଲୋଚିତ ଉତ୍କଳୀୟ ସାଧବଙ୍କର ନାମ ହୁଏତ କାହାକୁ ଜଣାନାହିଁ; କିନ୍ତୁ ତାଙ୍କ ଜୀବନର ଏକ ଆଲୌକିକ ଅଧ୍ୟାୟ ଜଗନ୍ନାଥମହିମାର ଅମର ଇତିହାସରେ ଚିରଦିନ ପାଇଁ ଲିପିବଦ୍ଧ ହୋଇ ରହିଅଛି ।

ପୂର୍ବକାଳରେ ଉତ୍କଳ ଥିଲା ଏକ ସମୃଦ୍ଧିଶାଳୀ ରାଜ୍ୟ । ଉତ୍କଳର ବଣିକ, ସାଧବମାନେ ବୋଇତରେ ଦେଶ ଦେଶାନ୍ତରକୁ ଗମନକରି ପ୍ରଚୁର ଧନ ସମ୍ପତ୍ତି ନିଜ ରାଜ୍ୟକୁ ବୋହି ଆଣୁଥିଲେ । ଏଠାରେ ଯେଉଁ ସାଧବଙ୍କ ବିଷୟ ବର୍ଣ୍ଣିତ ହେଉଛି, ସେ ଥିଲେ ଜଣେ ଉତ୍କଳୀୟ ବଣିକ । ଶୁଭ ମୁହୂର୍ତ୍ତରେ ଗୃହରୁ ବାହାରି ଦେଶାନ୍ତରରେ ବାଣିଜ୍ୟ କରିବା ପାଇଁ ସେ ଯାତ୍ରା କରିଥିଲେ ସମୁଦ୍ର ପଥରେ । କିଛିଦିନ ବିଦେଶରେ ରହି ଜଗନ୍ନାଥଙ୍କ କରୁଣାରୁ ସେ ବହୁ ଧନ ଅର୍ଜ୍ଜନ କରିପାରିଥିଲେ । ଶେଷରେ ଶୁଭ ମୁହୂର୍ତ୍ତ ଦେଖି ସେ ନିଜର ଧନରତ୍ନ ଭରା ବୋଇତଟିକୁ ମେଲି ଦେଇଥିଲେ ଗୃହାଭିମୁଖେ ।

ସମୁଦ୍ରର ତରଙ୍ଗାୟିତ ଜଳରେ ଦୋଳାୟିତ ବୋଇତଟି ଅପୂର୍ବ ନୃତ୍ୟ ସୃଷ୍ଟିକରି ଆଗକୁ ମାଡ଼ିଚାଲିଥିଲା । ଦିନେ ସନ୍ଧ୍ୟା ସମୟରେ ବୋଇତଟି ଲାଗିଲା ଗୋଟିଏ ନୂତନ ଦ୍ୱୀପ ନିକଟରେ । ଦ୍ୱୀପଟିର ପ୍ରାକୃତିକ ଶୋଭା ନିରୀକ୍ଷଣ କରି ସାଧବ ମୁଗ୍ଧ ହୋଇପଡ଼ିଲେ । ପରଦିନ ପ୍ରଭାତରେ ଦ୍ୱୀପଟିକୁ ବୁଲି ଦେଖିବାପାଇଁ ମନସ୍ଥ କରି ସେଠାରେ ଲଙ୍ଗର ପକାଇବାକୁ ସେ ନାବିକମାନଙ୍କୁ ନିର୍ଦ୍ଦେଶ ଦେଲେ । ସଙ୍ଗେ ସଙ୍ଗେ ତାଙ୍କର ନିର୍ଦ୍ଦେଶ ପାଳିତହେଲା ।

ଧୀରେ ଧୀରେ ସୂର୍ଯ୍ୟଦେବତା ପୃଥିବୀରୁ ବିଦାୟ ନେଇ ମାତୃ-କୋଳକୁ ଫେରିଗଲେ । ସାଧବ ବୋଇତ ଉପରେ ଛିଡ଼ାହୋଇ ନିକଟସ୍ଥ ଦ୍ୱୀପ ଆଡ଼କୁ ଦୃଷ୍ଟିନିବଦ୍ଧ କଲେ; କିନ୍ତୁ ଏ କ'ଣ ? ରାତ୍ରିର ଘନ ଅନ୍ଧକାର ମଧ୍ୟରେ ସେ ଦେଖିବାକୁ ପାଇଲେ ଏକ ଆଲୋକ-ମୟ ବସ୍ତୁ । ଜନ ମାନବ ଶୂନ୍ୟ ଏହି ଦ୍ୱୀପରେ ଆଲୋକ କେଉଁଠୁ ଆସିଲା ? ସେ ତ ସାମାନ୍ୟ ଆଲୋକ ନୁହେଁ ; ତାହାର ଉଜ୍ଜ୍ୱଳ କିରଣରେ ନିକଟସ୍ଥ ଗଛପତ୍ର ମଧ୍ୟ ଝଲସି ଉଠୁଛନ୍ତି ! ଆଶା ଓ ଆଶଙ୍କା ମଧ୍ୟରେ ବୁଡ଼ିଗଲେ ଉତ୍କଳୀୟ ସାଧବ । ସେ ଶୁଣିଥିଲେ, ସମୁଦ୍ରରେ କେଉଁଠି ଏକ ମଣିଦ୍ୱୀପ ଅଛି । ସେହି ମଣିଦ୍ୱୀପରେ ବହୁ ମଣିଧାରୀ ମଣିଚୂଳ ସାପ ଅବସ୍ଥାନ କରୁଥିବାରୁ ତାହା ଯୁଗଯୁଗ ଧରି ବଣିକମାନଙ୍କୁ ଆକୃଷ୍ଟ କରିଆସିଛି । ଅବଶ୍ୟ କେହି କେହି ସେହି ଦ୍ୱୀପରୁ ମଣି ସଂଗ୍ରହ କରିବାରେ ସଫଳ ହୋଇଛନ୍ତି; କିନ୍ତୁ ସେଠାରେ ବହୁ ଜୀବନ ନଷ୍ଟ ହୋଇଥିବାର ସମ୍ବାଦ କାହାରିକୁ ଅବିଦିତ ନାହିଁ । ଆଲୋକମୟ ବସ୍ତୁଟିକୁ ଦେଖିଲାମାତ୍ରେ କେତେ ପ୍ରକାର ଚିନ୍ତାରେ ସାଧବଙ୍କର ମସ୍ତିଷ୍କ ଭାରାକ୍ରାନ୍ତ ହୋଇ ଉଠିଲା । ଏହି ଦ୍ୱୀପଟି ଆଉ ସେହି ଚିରବାଞ୍ଛିତ ମଣିଦ୍ୱୀପ ନୁହେଁ ତ ? ଆଲୋକମୟ ବସ୍ତୁ ନିକଟକୁ ଯିବାକୁ ତାଙ୍କର ମନ ଛଟପଟ ହେଲା; କିନ୍ତୁ ଏତେ ରାତିରେ ସେଠାକୁ ଯିବାକୁ ତାଙ୍କର ସାହସ ପାଇଲା ନାହିଁ । ଯଦି ସେହି ଆଲୋକମୟ ବସ୍ତୁଟି ମଣି ହୋଇଥାଏ; ତେବେ ତାହା ନିକଟରେ ନିଶ୍ଚୟ ମଣିଚୂଳ ସାପ ବୁଲା ବୁଲି କରୁଥିବ । ଏତେ ରାତିରେ ମଣିକୁ ଧରି ମଣିହରା ସାପ ନିକଟରୁ ଖସି ଆସିବା କେବେ-ହେଲେ ସମ୍ଭବପର ନୁହେଁ । ବରଂ ପ୍ରଭାତ ହେଲେ ସେଠାକୁ ଯିବା ଅନେକ ଗୁଣରେ ନିରାପଦ । ଏହିପରି ଚିନ୍ତାକରିବା ପରେ ପୁଣି ଏକ ଆଶଙ୍କା ସାଧବଙ୍କ ମନରେ ଜାଗ୍ରତ ହେଲା । ରାତ୍ରିର ଘନ ଅନ୍ଧକାର ମଧ୍ୟରେ ଯିନା ଆଲୋକିତ ବସ୍ତୁଟି ଦେଖାଯାଉଛି ! କିନ୍ତୁ

ପ୍ରଭାତର ସୂର୍ଯ୍ୟାଲୋକରେ ତାହାର ସ୍ଥାନ ସେ ନିରୂପଣ କରିବେ କିପରି ? ଏହିପରି ଚିନ୍ତାକରି ସେ କେତେଗୁଡ଼ିଏ ଗଛ ବୁଦାକୁ ସାଙ୍କେତିକ ଚିହ୍ନରୂପେ ଧରିନେଲେ ଏବଂ ଆଶା ଓ ଆଶଙ୍କା ମଧ୍ୟରେ ଶଯ୍ୟା ଗ୍ରହଣକଲେ ।

ତତ୍ପର ଦିନ ପ୍ରଭାତରେ ସାଧବ ଶଯ୍ୟାତ୍ୟାଗ କରି ନିଜର ନିତ୍ୟକର୍ମ ସମାପ୍ତ କଲେ ଏବଂ ପୂର୍ବୋକ୍ତ ସାଙ୍କେତିକ ଚିହ୍ନ ସାହାଯ୍ୟରେ ଆଗକୁ ଆଗେଇ ଚାଲିଲେ । କିଛିଦୂର ଆଗେଇ ଗଲା ପରେ ସେ ଦେଖିଲେ, ଏକ ବିରାଟକାୟ ସାପ ଯିବା ଆସିବାର ଗୁଡ଼ାଏ ଚିହ୍ନ ଭୂମି ଉପରେ ପଡ଼ିଛି । ହଠାତ୍ ତାଙ୍କର ହୃତ ଭୟରେ ଧକ୍ ଧକ୍ ହେବାକୁ ଲାଗିଲା । ପ୍ରତି ମୁହୂର୍ତ୍ତରେ ସାପ ହାବୁଡ଼ରେ ପଡ଼ିଯିବାର ଆଶଙ୍କା ତାଙ୍କୁ ବିବଶ କରି ପକାଇଲା । ଥରେ ସାପ ହାବୁଡ଼ରେ ପଡ଼ିଲେ ସେଠାରୁ ଉଦ୍ଧାର ପାଇ ଖସି ଆସିବା ଯେ ସମ୍ପୂର୍ଣ୍ଣ ଅସମ୍ଭବ ! ତଥାପି ମଣି ଲାଭ କରିବାର ଲୋଭ ତାଙ୍କୁ ଆଗେଇ ଯିବାକୁ ବାଧ କଲା । ସେ ଅତି ସନ୍ତର୍ପଣରେ ସତର୍କ ଦୃଷ୍ଟି ରଖି ଆଗକୁ ଆଗେଇ ଚାଲିଲେ ।

କିଛି ସମୟ ସନ୍ତର୍ପଣରେ ଆଗେଇବା ପରେ ସାଧବ ଲକ୍ଷ୍ୟ-ସ୍ଥଳରେ ଉପନୀତ ହେଲେ । ସେଠାରେ ସେ ଦେଖିବାକୁ ପାଇଲେ, ସେହି ଆଲୋକିତ ବସ୍ତୁଟି ଉଜ୍ଜ୍ୱଳ ରଶ୍ମି ବିକିରଣ କରି ଭୂମିରେ ପଡ଼ିଅଛି । ନିକଟରେ ଏକ ବିରାଟକାୟ ସାପ ଯିବା ଆସିବା କରିବାର ସ୍ପଷ୍ଟ ଚିହ୍ନ ମଧ୍ୟ ଦେଖାଯାଉଛି । ତେଣୁ ସେହି ଆଲୋକିତ ବସ୍ତୁଟି ଯେ ମଣିଚୂଳ ସାପର ମଣି, ଏଥିରେ କୌଣସି ସନ୍ଦେହ ନାହିଁ । ମଣିଟିକୁ ଦେଖି ସାଧବଙ୍କର ଚକ୍ଷୁ ଝଲସି ଉଠିଲା । ହଠାତ୍ ସେ କେତୋଟି ବଡ଼ ବଡ଼ ପତ୍ର ଛିଣ୍ଡାଇ ସେହି ପତ୍ର ସାହାଯ୍ୟରେ ମଣିଟିକୁ ଘୋଡ଼ାଇ ନେଲେ ଏବଂ ଦ୍ରୁତପଦରେ ଛୁଟି ଚାଲିଲେ

ବୋଇତ ଆଡ଼କୁ । କିଛି ସମୟ ଦୌଡ଼ିବା ପରେ ସେ ସାପର ଗର୍ଜନ ଶୁଣିବାକୁ ପାଇଲେ । ବୋଧହୁଏ ସାପଟି ତାଙ୍କୁ ମଣି ଚୋରି କରିବାର ଦେଖିପାରିଛି ଏବଂ ହୃତ ମଣିକୁ ଉଦ୍ଧାର କରିବାପାଇଁ ତାଙ୍କର ପିଛା ଧରିଛି । ଅଣନିଃଶ୍ୱାସୀ ହୋଇ ଦୌଡ଼ିବାକୁ ଲଗିଲେ ଉତ୍କଳୀୟ ସାଧବ ; କିନ୍ତୁ ପରକ୍ଷଣରେ ସେ ଅନୁଭବ କଲେ, ସେ ଯେତେ ଜୋର୍‌ରେ ଆଗକୁ ଦୌଡ଼ୁଛନ୍ତି, ସାପ ଅଧିକ ଜୋର୍‌ରେ ତାଙ୍କର ପିଛା ଧରିଛି ।

ଏଣେ ବୋଇତରେ ଥିବା ନାବିକମାନେ ଅସ୍ତବ୍ୟସ୍ତ ହୋଇ ଦୌଡ଼ୁଥିବା ସାଧବଙ୍କୁ ଦେଖି ପାରିଲେ । ସାଧବ ଯେ କୌଣସି ହିଂସ୍ରଜନ୍ତୁ ହାବୁଡ଼ରେ ପଡ଼ି ପ୍ରାଣ ବିକଳରେ ଦୌଡ଼ି ଆସୁଛନ୍ତି । ତାହା ବୁଝିବାକୁ କାହାରି ବାକି ରହିଲନାହିଁ । ସେମାନେ ଆଶୁ ବିପଦରୁ ରକ୍ଷା ପାଇବା ପାଇଁ ଲଙ୍ଗର ଉଠାଇ ପଳାଇବାକୁ ପ୍ରସ୍ତୁତ ହୋଇ ରହିଲେ ।

ଅସ୍ତବ୍ୟସ୍ତ ହୋଇ ବହୁ ସମୟ ଦୌଡ଼ିବା ପରେ ଶେଷରେ ସାଧବ ପଟା ଉପର ଦେଇ ବୋଇତ ଉପରକୁ ଉଠିଗଲେ । ସଙ୍ଗେ ସଙ୍ଗେ ପଟା ଓ ଲଙ୍ଗର ଉଠାଇ ଦିଆଗଲା । ତାହାପରେ ବୋଇତ ନାଚି ନାଚି ଭାସି ଚାଲିଲା ସମୁଦ୍ର ବକ୍ଷ ଉପରେ । ବୋଇତ ଉପରକୁ ଚଢ଼ି ସାଧବ ଆଶ୍ୱସ୍ତିର ନିଃଶ୍ୱାସ ମାରିଲେ ।

ସାଧବ ସମେତ ସମସ୍ତ ନାବିକଙ୍କର ଦୃଷ୍ଟି ପୂର୍ବୋକ୍ତ ସେହି ମଣିଦ୍ୱୀପ ଉପରେ । କିଛି ସମୟ ପରେ ମଣିହରା ସାପର ବିରାଟକାୟ ଶରୀର ଦୃଶ୍ୟମାନ ହେଲା । ସାପର ବିଶାଳତା ଦେଖି ସମସ୍ତେ ଚମକି ଉଠିଲେ । ଏତେ ବଡ଼ ସାପ ପୂର୍ବରୁ ସେମାନେ କେହି ଦେଖି ନଥିଲେ । ସାପଟିକୁ ଦେଖି ସମସ୍ତେ ଅନୁଭବ କଲେ,

ବୋଧହୁଏ ସାପଟି ଏକକାଳୀନ ଅନେକ ଗୁଡ଼ାଏ ମନୁଷ୍ୟ ଗିଳିଦେଇ ପାରିବ ।

ସାପଟି ଭୀଷଣ ଗର୍ଜନ କରି କିଛି ସମୟ ସମୁଦ୍ରକୂଳରେ ଅଟକି ରହିଲା । ସାଧବ ମନେକଲେ, ବୋଧହୁଏ ସ୍ଥଳରେ ବାସ କରୁଥିବା ସାପଟି ସମୁଦ୍ର ବକ୍ଷକୁ ଲମ୍ଫ ପ୍ରଦାନ କରିବାକୁ ସାହସ କରିପାରୁନାହିଁ; କିନ୍ତୁ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ସାପଟି ସମୁଦ୍ରର ତରଙ୍ଗାୟିତ ବକ୍ଷ ଉପରକୁ ଲମ୍ଫପ୍ରଦାନ କଲା । ଢେଉ କାଟି ସମୁଦ୍ରର ସ୍ଥିର ଜଳ ଉପରକୁ ଖସିଯିବା ପାଇଁ ନାବିକମାନେ ପ୍ରାଣମୂର୍ଚ୍ଛା ଆହୁଲା ଧରିଲେ । ସେମାନେ ମନେକଲେ, ବୋଧହୁଏ ସାପଟି ସମୁଦ୍ରକୂଳର ଢେଉ କାଟି ସ୍ଥିର ଜଳକୁ ଆସି ପାରିବ ନାହିଁ; କିନ୍ତୁ ସମୁଦ୍ର ବକ୍ଷରେ ସାପର ଶକ୍ତି ଥିଲା ନାବିକମାନଙ୍କ ଶକ୍ତିଠାରୁ ଯଥେଷ୍ଟ ଅଧିକ । ବୋଇତ ସ୍ଥିର ଜଳକୁ ଆସିବାର ଅଳ୍ପସମୟ ପରେ ସାପଟି ସ୍ଥିର ଜଳକୁ ପହଁରି ଆସିଲା । ଏଥର ନାବିକମାନେ ଯାଆନ୍ତି କୁଆଡ଼େ ? ସମସ୍ତେ ଭୟରେ ଥରିବାକୁ ଲାଗିଲେ । ବୋଇତର ବେଗ ଅପେକ୍ଷା ସାପର ବେଗ ଅଧିକ ଥିବାରୁ ବୋଇତ ଓ ସାପ ମଧ୍ୟରେ ଥିବା ବ୍ୟବଧାନ ବେଳକୁ ବେଳ କମି ଆସୁଛି । କେବଳ ସେତିକି ନୁହେଁ, ବୋଇତ ଓ ସାପ ମଧ୍ୟରେ ଥିବା ବ୍ୟବଧାନ ଯେତିକି କମୁଛି, ସାପର ଆକାର ସେହି ଅନୁପାତରେ ବଢ଼ିବାରେ ଲାଗିଛି । ବୋଧହୁଏ ମଣିହରା ସାପଟି ବୋଇତକୁ ଗିଳିଦେବାକୁ କ୍ରୋଧରେ ଫୁଲି ଉଠୁଛି !

ସାଧବ ସମେତ ନାବିକମାନଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦିଶିଲା । ସାପର ଭୀଷଣ ଗର୍ଜନରେ ଜଳଚର ପ୍ରାଣୀମାନେ ଭୟରେ ପାଣି ଭିତରେ ଲୁଚି ଯାଉଛନ୍ତି । ତା' ମୁହଁରୁ ଅନବରତ ଖସି ପଡ଼ୁଥିବା ବିଷବିନ୍ଦୁ ଚକା ଚକା ହୋଇ ସମୁଦ୍ର ପାଣିରେ ଭସି ବୁଲୁଛି ।

ସାପ କବଳରୁ ରକ୍ଷା ପାଇବାର ଆଉ କୌଣସି ଉପାୟ ନାହିଁ । ଅଳ୍ପକ୍ଷଣ ପରେ ସମସ୍ତେ ସାପର ବିଶାଳ ଗର୍ଭରେ ସମାଧିସ୍ଥ ହେବେ । ହଠାତ୍ ସାଧବଙ୍କର ମନେ ପଡ଼ିଲା ବିପଦଭଞ୍ଜନ ଇଷ୍ଟ ଦେବତା ଜଗନ୍ନାଥଙ୍କ କଥା । ଭକ୍ତମାନଙ୍କୁ କେତେ କେତେ ବଡ଼ ବିପଦରୁ ସେ ଉଦ୍ଧାର କରି ନାହାନ୍ତି ସତେ ! ନତଜାନୁ ହୋଇ ବସି ପଡ଼ିଲେ ଉତ୍କଳୀୟ ସାଧବ । ତାଙ୍କର ଚକ୍ଷୁଦ୍ୱୟରୁ ଝରି ଆସିଲା ଦୁଇଧାର ଲୋତକ । କାତର ପ୍ରାର୍ଥନା କରି ସେ କହିଲେ—"ହେ ପ୍ରଭୁ ଜଗନ୍ନାଥ ! ଏ ବିପଦ କାଳରେ ତୁମେ ହିଁ ଏକମାତ୍ର ଭରସା । ପୂର୍ବକାଳରେ ତୁମେ କୁମ୍ଭୀର କବଳରୁ ହସ୍ତୀକୁ, ବ୍ୟାଧ କବଳରୁ ମୃଗୁଣୀକୁ ଏବଂ ଦୁରାଗ୍ରହୀ କୌରବମାନଙ୍କ କବଳରୁ ଦ୍ରୌପଦୀଙ୍କୁ ରକ୍ଷା କରିଛ । ତୁମର କରୁଣା ଅସୀମ ପ୍ରଭୁ ! ଥରେ ତୁମର କୃପା-ବାରି ବର୍ଷିତ ହେଲେ ବିପଦର ମହାମେରୁ ମଧ୍ୟ ଭୂଲୁଣ୍ଠିତ ପଡ଼େ । ସାପ କବଳରୁ ଆମ୍ଭମାନଙ୍କୁ ରକ୍ଷା କରି ତୁମର କୃପାସିନ୍ଧୁ ନାମକୁ ସାର୍ଥକ କର ପ୍ରଭୁ ! ତୁମର କୀର୍ତ୍ତି ସବୁଦିନ ପାଇଁ ରହିଥାଉ ।"

ତା'ପରେ ସାଧବ ହସ୍ତଗତ ମଣିଟିକୁ ଲକ୍ଷ୍ୟକରି କହିଲେ—"ପ୍ରଭୁ ! ଏ ମଣିଟିକୁ ବିକ୍ରୟ କରି ପ୍ରଚୁର ଧନ ଅର୍ଜ୍ଜନ କରିବାକୁ ଆଶାପୋଷଣ କରିଥିଲି; କିନ୍ତୁ ଏବେ ଜାଣୁଛି, ଏହା ମଣିଷ ଭୋଗଯୋଗ୍ୟ ପଦାର୍ଥ ନୁହେଁ । ଏହା ତୁମର ପ୍ରଭୁ ! ସାପ କବଳରୁ ଉଦ୍ଧାର ପାଇଗଲେ, ଏହାକୁ ତୁମ ମସ୍ତକରେ ହିଁ ଚଢ଼ାଇବି ।"

ସାଧବଙ୍କୁ ପ୍ରାର୍ଥନା କରୁଥିବାର ଦେଖି ବୋଇତର ନାବିକ-ମାନେ ମଧ୍ୟ ବିକଳ କଣ୍ଠରେ ଜଗନ୍ନାଥଙ୍କୁ ଡାକିବାକୁ ଲାଗିଲେ । "ଜଗନ୍ନାଥ ! ରକ୍ଷାକର" ଶବ୍ଦରେ ସମୁଦ୍ରର ବାୟୁମଣ୍ଡଳ କମ୍ପି ଉଠିଲା ।

ସାପଟି ଦ୍ରୁତଗତିରେ ବୋଇତ ନିକଟକୁ ଛୁଟି ଆସୁଛି । ଆଉ କେତୋଟି ମୁହୂର୍ତ୍ତମଧ୍ୟରେ ସେ ବୋଇତ ନିକଟରେ ପହଞ୍ଚି-

ଯିବ । ଜଗନ୍ନାଥଙ୍କ କୃପାରେ ବିପଦରୁ ରକ୍ଷା ପାଇବାର ଆଶା ଏବଂ ସାପ ଗର୍ଭରେ ପଡ଼ି ଅକାଳରେ ପ୍ରାଣ ବିସର୍ଜନ କରିବାର ଆଶଙ୍କା— ଏହିପରି ଆଶା ଓ ଆଶଙ୍କା ମଧ୍ୟରେ ଦୋଦୁଲ୍ୟମାନ ହୋଇ ସାଧବ ଓ ନାବିକମାନଙ୍କର ହୃତ୍‌କମ୍ପ ବଢ଼ିବାରେ ଲାଗିଛି । ସମସ୍ତଙ୍କର ଦୃଷ୍ଟି ମଣିହରା ସାପଟି ଉପରେ । ହଠାତ୍ ପାଣି ଭିତରୁ କ'ଣ ଗୋଟାଏ ଜୀବ ଉଠି ସାପଟିକୁ ଦୁଇଖଣ୍ଡ କରି କାଟି ପକାଇଲା । ସମୁଦ୍ରର ନୀଳଜଳ ସାପ ରକ୍ତରେ ଲାଲ ହୋଇଗଲା । ଭୟାବହ ବିପଦରୁ ଉଦ୍ଧାର ପାଇ ସାଧବ ଓ ନାବିକମାନେ ଜଗନ୍ନାଥଙ୍କୁ ବାରମ୍ବାର କୃତଜ୍ଞତା ଜଣାଇଲେ । ସମସ୍ତଙ୍କ ଚକ୍ଷୁ ଆନନ୍ଦାଶ୍ରୁ ଜଳରେ ପୂର୍ଣ୍ଣ ହୋଇଗଲା ।

ବୋଇତଟି ଯେତେବେଳେ କଳିଙ୍ଗ ଉପକୂଳରେ ଲାଗିଲା, ସେତେବେଳେ ସାଧବ ଗୃହକୁ ନଯାଇ ପ୍ରଥମେ ଶ୍ରୀକ୍ଷେତ୍ରକୁ ଗମନ କଲେ । ଜଗନ୍ନାଥଙ୍କୁ ଦର୍ଶନ କରିବା ମାତ୍ରେ ତାଙ୍କର ନେତ୍ର ଯୁଗଳରୁ କୃତଜ୍ଞତାଭରା ଅଶ୍ରୁଧାରା ଝରିବାକୁ ଲାଗିଲା । ସେ ମଣିଟିକୁ ଜଗନ୍ନାଥଙ୍କ ପାଦପଦ୍ମରେ ଅର୍ପଣ କରିଦେଲେ ।

ବିପଦଭଞ୍ଜନ ଜଗନ୍ନାଥ ଭକ୍ତର ସର୍ବବିଧ ବିପଦ ଦୂର କରନ୍ତି । ଏହା ଉପରୋକ୍ତ ଆଖ୍ୟାୟିକାରୁ ସହଜରେ ଅନୁମିତ ହୁଏ । ଆଖ୍ୟାୟିକାଟିର ସତ୍ୟତା ପ୍ରମାଣିତ କରିବା ପାଇଁ ଏବେ ମଧ୍ୟ ଜଗନ୍ନାଥଙ୍କ ମସ୍ତକରେ ସାଧବ ପ୍ରଦତ୍ତ ସେହି ମଣିଟି ଶୋଭା ପାଉଅଛି । ଯୁଗଯୁଗଧରି ତାହା ଜଗନ୍ନାଥଙ୍କ ମସ୍ତକରେ ରହି ତାଙ୍କର ଅନନ୍ତ ମହିମା ପ୍ରଚାର କରୁଥିବ ।



ମୁଦ୍ରାକର—ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର, ପ୍ରସାଦ ପ୍ରେସ, କଟକ-୨ ।

# ଭକ୍ତ ଓ ଜଗନ୍ନାଥ

( ତୃତୀୟ ଭାଗ )

ଉପନିଷଦରେ ଯେଉଁ ବ୍ରହ୍ମଙ୍କର ସ୍ୱରୂପ ବର୍ଣ୍ଣନା କରାଯାଇଛି, ଠିକ୍ ଭାବରେ ଅନୁଧ୍ୟାନ କଲେ ଜଣାଯାଏ, ଜଗନ୍ନାଥ ହିଁ ସେହି ବ୍ରହ୍ମଙ୍କର ପ୍ରତୀକ । ଶ୍ରୀଜଗନ୍ନାଥଙ୍କ ଆଉ ଦଶଜଣ ଭକ୍ତ— ଜଗନ୍ନାଥ ଦାସ, ଦୀନକୃଷ୍ଣ ଦାସ, ଡଳଛ ମହାପାତ୍ର, ମଣିଦାସ, ରଘୁ ବେହେରା, ମାଧବ ଦାସ, କୁଳ ଶିଖର ରାଜା, ରଘୁ ଦାସ, ବଷ୍ଟୁ ପ୍ରଦ୍ୟୁମ୍ନ ଏବଂ ଉତ୍କଳୀୟ ସାଧବ—ଏମାନଙ୍କର ମହାପ୍ରଭୁଙ୍କ ସହ କଉଳ ସତ୍-ସମ୍ପର୍କ ଥିଲା ତାହା ସବୁ ଏହି ତୃତୀୟ ଭାଗରେ ବର୍ଣ୍ଣିତ ।

Cover Printed at Prasad Press.